ସଚିତ୍ର

# ଶ୍ରୀ ସତ୍ୟନାରାୟଣ ବ୍ରତପୂଜା

ନବାକ୍ଷରୀ



ନୂତନ ମୁଦ୍ରଣ

ଶ୍ରୀ ନାରାୟଣ ଭରସା ମେହେର

ଓଁ ନମୋ ଭଗବତେ ଶ୍ରୀ ବାସୁଦେବାୟ

-ପ୍ରଣେତାଙ୍କ-

# ନିବେଦନ



ମଙ୍ଗଳମୟ ଭଗବାନ ଏହି ସଂସାରରେ ଅନେକ ରୂପରେ ଅବତୀର୍ଣ୍ଣ ହୋଇ ଭକ୍ତମାନଙ୍କର ମନବାଞ୍ଛା ଅବଧ୍ୟରେ ପୂର୍ଣ୍ଣ କରନ୍ତି, ସେ ପ୍ରଭୁଙ୍କର ମହିମା ଅପାର,ତାଙ୍କର ଅନନ୍ତ ଶକ୍ତି,ସେ ଅନ୍ତର୍ଯ୍ୟାମୀ, ଜଗତର ସର୍ବନିଅନ୍ତା ।

ସେହି ଭଗବାନ ଏହି କଳିଯୁଗରେ ମନୁଷ୍ୟମାନଙ୍କର ଦୁଃଖ ଶୋକ, ପାପ, ତାପ, ଖଣ୍ଡନ କରିବା ନିମନ୍ତେ ଶ୍ରୀ ସତ୍ୟନାରାୟଣ ସ୍ୱରୂପରେ ଅବତୀର୍ଣ୍ଣ ହୋଇ ପୀର ପଇଗମ୍ବର, ସତ୍ୟଦେବ, ସତ୍ୟ-ନାରାୟଣ ନାମ ଧାରଣ କରି ଭକ୍ତମାନଙ୍କୁ ଦୁଃସହ ଯନ୍ତ୍ରଣାରୁ ଉଦ୍ଧାର କରି ମୋକ୍ଷଗତି ଦେଇ ଅଛନ୍ତି । ସେହି ପ୍ରଭୁଙ୍କର ଲୀଳା ଏହି "ଶ୍ରୀ ସତ୍ୟନାରାୟଣ ବ୍ରତ ପୂଜା"ନାମକପୁସ୍ତକରେବର୍ଣ୍ଣିତହୋଇଅଛି ।

ଏହି ଶ୍ରୀ ସତ୍ୟନାରାୟଣ ବ୍ରତ ପୂଜାକୁ ଯେ କି ମହାମୁନି ଅଷ୍ଟାଦଶ ପୁରାଣ ରଚୟିତା ବେଦବ୍ୟାସ ମୂଳ ସଂସ୍କୃତ ଶ୍ଳୋକରେ ଲେଖିଯାଇ ଅଛନ୍ତି । ଉକ୍ତ ମୂଳ ସଂସ୍କୃତ ଶ୍ଳୋକ ଦେଖି ଭାରତର ଅନେକ ଲେଖକ ଓ କବି ଆଦି ଅନେକ ପ୍ରକାର ପଦ୍ୟ ଛନ୍ଦରେ ହିନ୍ଦି, ବଙ୍ଗଳା, ଓଡ଼ିଆ ଇତ୍ୟାଦି ଭାଷାରେ ରଚନା କରି ପ୍ରକାଶ କରିଅଛନ୍ତି ତାହା ଅଦ୍ୟାବଧି ଚଳି ଆସୁଅଛି ।

ମାତ୍ର ଉକ୍ତ ସତ୍ୟନାରାୟଣ ବ୍ରତ ପୂଜାକୁ ନବାକ୍ଷରୀ ପଦ୍ୟରେ ଓଡ଼ିଆ ଭାଷାରେ ସମ୍ପୂର୍ଣ୍ଣରୂପେ ପ୍ରଚାର ହୋଇ ନଥିବାରୁ ମୁଁ ସର୍ବ ସାଧାରଣଙ୍କ ମଙ୍ଗଳ ସକାଶେ କେବଳ ବ୍ରତ ପୂଜାକୁ ମୂଳ ଗ୍ରନ୍ଥରୁ ନବାକ୍ଷରୀ ପଦରେ ସରଳ ଭାଷାରେ ଲେଖିବାକୁ ସାହସୀ ହେଲି । ଉକ୍ତ ବ୍ରତ ପୂଜାକୁ ଲେଖିବାକୁ ମୋର ସେତକ ଶକ୍ତି ହୋଇ ନ ଥାଆନ୍ତା, କେବଳ ଶ୍ରୀ ଶ୍ରୀ ସତ୍ୟନାରାୟଣ ସ୍ୱାମୀଙ୍କ ଓ ବଦ୍ରିରାଜ ସ୍ୱାମୀ ଓ ଶ୍ରୀ ସରସ୍ୱତୀମାତାଙ୍କ ଅସୀମ କୃପା ଦୃଷ୍ଟିରୁ ଏତକ ମାତ୍ର ।

ଏହି ଶ୍ରୀ ସତ୍ୟନାରାୟଣ ବ୍ରତ ପୂଜାରେ ପ୍ରଥମ ଭାଗ ବ୍ରତକଥା ଖଣ୍ଡକେବଳ ସପ୍ତମ ଅଧ୍ୟାୟ ଓ ଦ୍ୱିତୀୟଭାଗ ଶ୍ରୀ ସତ୍ୟନାରାୟଣ ଜନ୍ମ ଖଣ୍ଡ, ପଞ୍ଚମ ଅଧ୍ୟାୟରେ ପୂର୍ଣ୍ଣ ମୋଟରେ ଦୁଇଭାଗ । ଏକତ୍ରେ ଦ୍ୱାଦଶ ଅଧ୍ୟାୟରେ ସମ୍ପୂର୍ଣ୍ଣ ହୋଇଅଛି ।

ପ୍ରଥମ ଭାଗ—ବ୍ରତକଥା ଖଣ୍ଡରେ ଶ୍ରୀ ସତ୍ୟନାରାୟଣ ସ୍ୱାମୀଙ୍କର ବ୍ରତ ପୂଜା ବିଷୟରେ ସପ୍ତମ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି । ଯଥା ପ୍ରଥମ ଅଧ୍ୟାୟରେ ଶ୍ରୀ ସତ୍ୟନାରାୟଣ ବନ୍ଦନା, ଦ୍ୱିତୀୟରେ ସତ୍ୟ-ନାରାୟଣ ବ୍ରତ କଥନ, ତୃତୀୟରେ ସତାନନ୍ଦ ବିପ୍ର ଉପାଖ୍ୟାନ, ଚତୁର୍ଥରେ—କାଷ୍ଠବିକ୍ରେତା ଉପାଖ୍ୟାନ । ପଞ୍ଚମରେ—ଉଲ୍କାମୁଖ ରାଜା ଉପାଖ୍ୟାନ, ଷଷ୍ଠରେ—ବୈଶ୍ୟସାଧୁ ଉପାଖ୍ୟାନ । ସପ୍ତମରେ ଅଙ୍ଗଧ୍ୱଜ ରାଜା ଉପାଖ୍ୟାନ ଇତ୍ୟାଦି ।

ଦ୍ୱିତୀୟ ଭାଗ—ଶ୍ରୀ ସତ୍ୟନାରାୟଣ ଜନ୍ମଖଣ୍ଡ ଏଥିରେ ସତ୍ୟ ନାରାୟଣ ସ୍ୱାମୀଙ୍କର ଜନ୍ମ ବିଷୟରେ ବିଶଦ୍ ଭାବରେ ବର୍ଣ୍ଣନା କରାଯାଇ ବ୍ରତପୂଜା ପର୍ଯ୍ୟନ୍ତ ବର୍ଣ୍ଣିତ ହୋଇଅଛି । କେବଳ ପ୍ରଥମରୁ ପଞ୍ଚମ ଅଧ୍ୟାୟ ପର୍ଯ୍ୟନ୍ତ ଅଛି ।

କାରଣ ଶ୍ରୀ ସତ୍ୟନାରାୟଣ ସ୍ୱାମୀଙ୍କର ଜନ୍ମ ବିଷୟରେ ଅନେକ ଜାଣନ୍ତି ନାହିଁ, ମାତ୍ର ବ୍ରତ ପୂଜା ବିଷୟରେ ଜାଣନ୍ତି ଏଥି ହେତୁସର୍ବ ସାଧାରଣଙ୍କ ଜାଣିବା ନିମିତ୍ତ ଉପକାର ସକାଶେ ପ୍ରଭୁଙ୍କର ଜନ୍ମଖଣ୍ଡ ମଧ୍ୟ କେବଳ ନବାକ୍ଷରୀ ଛନ୍ଦରେ ପାଞ୍ଚ ଅଧ୍ୟାୟରେ ଲେଖିବାକୁ ବାଧ୍ୟ ହେଲି ।

ପାଠକଗଣ ? କେଉଁ ବ୍ୟକ୍ତି ପୁତ୍ର କାମନାର୍ଥେ ଶ୍ରୀସତ୍ୟନାରାୟଣ ବ୍ରତ ପୂଜା କରିବେ ସେତେବେଳେ କଥା ଶୁଣାଇ ବସିଲେ ବ୍ରତକଥା ଖଣ୍ଡ ଶେଷ କଲାପରେ ତତ୍ସଙ୍ଗେ ଆଳସ୍ୟ ନହୋଇ ଶ୍ରୀସତ୍ୟ-ନାରାୟଣ ମହାପ୍ରଭୁଙ୍କଠାରେ ଧ୍ୟାନଦେଇ ଶ୍ରୀସତ୍ୟନାରାୟଣ ଜନ୍ମଖଣ୍ଡ ଦ୍ୱିତୀୟ ଭାଗ ମଧ୍ୟ ସମଗ୍ର ଦ୍ୱାଦଶ ଅଧ୍ୟାୟ ପାଠ କରିବାକୁ ଭୁଲିବେ ନାହିଁ ।

ଏତିକି ହେଲେ ମୋର ପରିଶ୍ରମ ଫଳ ସଫଳ ହେଲା ବୋଲି ମନେ କରିବ । ଇତି ।

ଶୁକ୍ରବାର ଶ୍ରୀ ଗଣେଶ ଚତୁର୍ଥୀ ଭାଦ୍ର ଶୁକ୍ଳପକ୍ଷ ଦାଽଽନ ସନ ୧୩୫୩ ସାଲ ।

ମୁଃପୋଃ ସିନାପାଲି
ଖଡ଼ିଆଳ-ରାଜ୍ୟ
ତା ୩୦।୮।୧୯୪୭

ନିବେଦକ
ଶ୍ରୀ ନାରାୟଣଭରସା ମେହେର

## ଶ୍ରୀ ସତ୍ୟନାରାୟଣ ବ୍ରତ ପୂଜାର

# ସୂଚିପତ୍ର

## ବ୍ରତକଥା ଖଣ୍ଡ—ପ୍ରଥମ ଭାଗ



*—

## ଶ୍ରୀ ସତ୍ୟନାରାୟଣ ଜନ୍ମଖଣ୍ଡ
## ଦ୍ୱିତୀୟ ଭାଗ



ଇତି ସୂଚିପତ୍ର ସମାପ୍ତ

—*—

## ଶ୍ରୀ ସତ୍ୟନାରାୟଣ ବ୍ରତପୂଜାର ସାମଗ୍ରୀ ସୂଚୀ

୧ । କଦଳୀ ସ୍ତମ୍ଭ
୨ । ଆମ୍ବ ପଲ୍ଲବ
୩ । ପଞ୍ଚ ପଲ୍ଲବ
୪ । ନାରିକେଳ
୫ । ଗୁଆ (ସୁପାରି)
୬ । ହରିଡ଼ା
୭ । ଶ୍ରୀ ସତ୍ୟ ନାରାୟଣ ମୂର୍ତ୍ତି
୮ । ଶ୍ରୀ ସତ୍ୟନାରାୟଣ ଆସନପୀଢ଼ା
୯ । ଆସନ ବସ୍ତ୍ର
୧୦ । କଳସ
୧୧ । ଯଜ୍ଞ ପବିତ
୧୨ । ପଞ୍ଚରତ୍ନ
୧୩ । ଶୁକ୍ଳବସ୍ତ୍ର
୧୪ । ଉଆ ତଣ୍ଡୁଳ
୧୫ । କୁଙ୍କୁମ
୧୬ । ଚନ୍ଦନ
୧୭ । ଗୁଲାଲ
୧୮ । ଧୂପ
୧୯ । ନୈବେଦ୍ୟ (ପ୍ରସାଦ)
୨୦ । ଗୋ ଘୃତ
୨୧ । ଶର୍କରା (ଚିନି)
୨୨ । ଗୋଦୁଗ୍ଧ
୨୩ । ଗୁଡ଼
୨୪ । ଗୋଧୂମ ଗହମ ଅଟା)
୨୫ । ପାଚିଲା କଦଳୀଫଳ
୨୬ । ତାମ୍ବୁଳ
୨୭ । ନାନାବର୍ଣ୍ଣର ଫୁଲ
୨୮ । ତୁଳସୀପତ୍ର, ପୁଷ୍ପ
୨୯ । ଫୁଲମାଳାଦି
୩୦ । ପଞ୍ଚାମୃତ (ଦୁଧ, ଦହି, ଘୃତ, ମଧୁ, ଶର୍କରା)
୩୧ । ପୁଣ୍ୟାହବାଚକ କଳଶ
୩୨ । ଭଗବନ୍ତ ପୀଠ
୩୩ । ପୀଠ
୩୪ । ବ୍ରାହ୍ମଣ ଦକ୍ଷିଣା
୩୫ । ଦକ୍ଷିଣା ଦ୍ରବ୍ୟାଦି

ଓଁ ତତ୍ସତ୍

## ଅଥଃ ଶ୍ରୀ ସତ୍ୟନାରାୟଣ ପୂଜନାଦି ବିଧିଃ

ଓଁ ଶ୍ରୀ ସତ୍ୟନାରାୟଣ ନମଃ

ଶ୍ରୀ ଗଣେଶାୟ ନମଃ

ବ୍ରହ୍ମ ରବି ସଂକ୍ରମଣେ ଦିନେ ପୌର୍ଣ୍ଣିମାସ୍ୟାମେକାଦାଶ୍ୟ ବା ଯସ୍ମିନ୍ କସ୍ମିନ୍ ଶୁଭଦିନେ ବା ସାୟଂକାଳେ ସ୍ନାନ କୃତ୍ୱା ପୂଜାସ୍ଥାନଂ ଆଗତ୍ୟାମନେ ଉପବିଶ୍ୟାଽଚମ୍ୟପବିତ୍ର ଧାରଣଂ କୃତ୍ୱା ମଣ୍ଡଳଂସ୍ଥାପିତଂ ଗଣେଶତ୍ୟାଦି ଗୌରୀ ବରୁଣ ଲୋକପାଳା ସୂର୍ଯ୍ୟାଦି ନବଗ୍ରହାଧିଦେବତ ପ୍ରତ୍ୟାଧି ଦୈବତେମାଦିଚତୁଃଷଷ୍ଟି ଦେବତା ବ୍ରହ୍ମେନ୍ଦ୍ରାଦୀନାଂ ପ୍ରତିଷ୍ଠା ବାହନଂ କୃତ୍ୱା ସଂକଳ୍ପଂ କୁର୍ଯ୍ୟାତ୍ ।

ଓଁ ତତ୍ସଦଦ୍ୟୋଦ୍ୟେତ୍ୟାଦିକାଳଦେଶାଦ୍ୟୁଚ୍ଚାର୍ଯ୍ୟାମୁକସ ଗୋତ୍ରୋଽ ହଂ ଅମୁକ ଶର୍ମାମୁନଃ ସକଳ ଦୁରିତୋ ପ୍ରଶମନ ସର୍ବାପଚ୍ଛାନ୍ତି ପୂର୍ବକଂ ସକଳ ମନୋରଥ ସିଦ୍ଧ୍ୟର୍ଥଂ ତଥା ସମ୍ପାଦିତ ସାମଗ୍ରୀଭିର୍ମଣ୍ଡଳସ୍ଥ ଗଣେଶାଦି ଦେବତା ପୂଜନ ପୂର୍ବକଂ ପୂର୍ବାଙ୍ଗକୃତ ଶ୍ରୀ ସତ୍ୟନାରାୟଣ ପୂଜନଂ ତତ୍କଥା ଶ୍ରବଣଂ ଚ କରିଷ୍ୟେ । ଇତି ସଂକଳ୍ପଃ ।

ତତୋଽର୍ଘ୍ୟ ପାଦ୍ୟଚମନୀୟ ସ୍ନାଗ ଗନ୍ଧାକ୍ଷତ ପୁଷ୍ପ ଧୂପ ଦୀପ ନୈବେଦ୍ୟାଚମନୀୟ ବାସସ୍ତାମ୍ବୁଳ ପୂଗୀଫଳ ଦ୍ରବ୍ୟାଣି ତତ୍ତ୍ୱମନ୍ତ୍ରୈଃ ସମର୍ପୟେତ୍ ।



### ତତଃ ଶ୍ରୀ ସତ୍ୟନାରାୟଣ ପୂଜନଂ

(ତାବତ୍ ପୁଷ୍ପମାଦାୟ ଧ୍ୟାନଂ କୁର୍ଯ୍ୟାତ୍)

ଧ୍ୟାୟେତ୍ସତ୍ୟ ଗୁଣାତୀତଂ ଗୁଣତ୍ରୟଂ ସମନ୍ୱିତଂ ।
ଲୋକନାଥ ତ୍ରିଲୋକେଶଂ କୌସ୍ତୁଭ ଭରଣଂ ହରିଂ ।

ପିତାମ୍ବରଂ ନୀଳବର୍ଣ୍ଣଂ ଶ୍ରୀବସ୍ତ୍ରପଦଭୂଷିତଂ ।
ଗୋବିନ୍ଦଂ ଗୋକୁଳାନନ୍ଦଂ ବ୍ରହ୍ମାଦ୍ୟୈରଭି ପୂଜିତଂ ।
ଇତିଧ୍ୟାନଂ । ୧ ।

ବ୍ୟକ୍ତାବ୍ୟକ୍ତ ସ୍ୱରୂପାୟ ହୃଷୀକପତୟେ ନମଃ ।
ମୟା ନିବେଦିତୋ ଭକ୍ତ୍ୟାହ୍ୟର୍ଘୋୟଂ ପ୍ରତିଗୃହ୍ୟତାଂ ।
ଇତି ଅର୍ଘ୍ୟଂ । ୨ ।

ନାରାୟଣ ନମୋସ୍ତେଽସ୍ତୁ ନରକାର୍ଣ୍ଣବ ତାରକଂ ।
ପାଦ୍ୟଂ ଗୃହାଣ ଦେବେଶ ମମ ସୌଖ୍ୟ ବିବର୍ଦ୍ଧୟ
ଇତି ପାଦ୍ୟଂ । ୩ ।

ମନ୍ଦାକିନ୍ୟା ସ୍ତୁ ଯଦ୍ ବାରି ସର୍ବପାପ ହରଂ ଶୁଭଂ ।
ତଦିଦଂ କଳ୍ପିତ ଦେବ ସମ୍ୟାଗାଚମ୍ୟତାଂ ତ୍ୱୟା ।
ଇତି ଆଚମନୀୟଂ । ୪ ।

ସ୍ନାନ ପଞ୍ଚାମୃତୈର୍ଦ୍ଦେବ ଗୃହାଣ ପୁରୁଷୋତ୍ତମଂ ।
ଅନାଥ ନାଥ ସର୍ବଜ୍ଞ ଗୀର୍ବାଣାପ୍ରଣତପ୍ରିୟ ।
ଇତି ସ୍ନାନଂ । ୫ ।

ଦେବସୂତ୍ର ସମାଯୁକ୍ତୋ ଯଜ୍ଞଦାମ ସମନ୍ୱିତେ ।
ସର୍ବବର୍ଣ୍ଣପ୍ରଦେ ଦେବ ବାସସୀତେ ବିନିର୍ମିତେ ।
ଇତି ବସ୍ତ୍ରଂ । ୬ ।

ବ୍ରହ୍ମା ବିଷ୍ଣୁ ମହେଶାନାଂ ନିର୍ମିତଂ ବ୍ରହ୍ମସୂତ୍ରକଂ
ଗୃହାଣ ଭଗବାନ୍ ବିଷ୍ଣୋ ସର୍ବେଷ୍ଟ ଫଳଦୋଭବ ।
ଇତି ଯଜ୍ଞୋପବୀତଂ । ୭ ।

ଶ୍ରୀ ଖଣ୍ଡ ଚନ୍ଦନଂ ଦିବ୍ୟଂ ଗନ୍ଧାଢ୍ୟ ସୁମନୋହରଂ ।
ବିଲେପନଂ ସୁରଶ୍ରେଷ୍ଠ ପ୍ରୀତ୍ୟର୍ଥଂ ପ୍ରତିଗୃହ୍ୟତାଂ ।
ଇତି ଚନ୍ଦନଂ । ୮ ।

ମଲ୍ଲିକାଦି ସୁଗନ୍ଧୀନି ମାଳତ୍ୟାଦିନି ବୈ ପ୍ରଭୋ ।
ମୟା ହୃତାନି ପୂଜ୍ୟାର୍ଥ ପୁଷ୍ପାଣି ପ୍ରତି ଗୃହ୍ୟତାଂ ।
ଇତି ପୁଷ୍ପଂ । ୯ ।

ବନସ୍ପତିରସୋ ଦିବ୍ୟଂ ଗନ୍ଧାଢ୍ୟ ସୁମନୋହରଃ ।
ଆଘ୍ରେୟଃ ସର୍ବଦେବନାଂ ଧୂପୋଽୟଂ ପ୍ରତି ଗୃହ୍ୟତାଂ ।
ଇତି ଧୂପଂ । ୧୦ ।

ଆଜ୍ୟାକ୍ତ ବର୍ତ୍ତି ସଯୁକ୍ତଂ ବହ୍ନିନା ଯୋଜିତଂ ଚ ଯତ୍ ।
ଦୀପ ଗୃହାଣଂ ଦେବେଶଂ ତ୍ରୈଲୋକ୍ୟତିମିରାପହଂ ।
ଇତି ଦୀପଂ । ୧୧ ।

ଘୃତ ପକ୍ୱ ହବିଷ୍ୟାନ୍ନ ପାୟସଂ ବା ସଶର୍କରଂ ।
ନାନାବିଧଂ ଚ ନୈବେଦ୍ୟଂ ବିଷ୍ଣୋମେ ପ୍ରତି ଗୃହ୍ୟତାଂ ।
ଇତି ନୈବେଦ୍ୟଂ । ୧୨ ।

ସର୍ବପାପଂ ହରଂ ଦିବ୍ୟଂ ଗାଙ୍ଗେୟ ନିର୍ମଳଂ ଜଳଂ
ପାନାର୍ଥଂ ଚ ମୟା ଦତ୍ତ ଗୃହାଣଂ ପୁରୁଷୋତ୍ତମଂ ।
ଇତି ଆଚମନୀୟଂ । ୧୩ ।

ଲବଙ୍ଗ କର୍ପୂରଂ ଯୁତଂ ତାମ୍ବୁଳଂ ସୁର ପୂଜିତଂ ।
ପ୍ରୀତ୍ୟା ଗୃହାଣଂ ଦେବେଶଂ ମମ ସୌଖ୍ୟଂ ବିବର୍ଦ୍ଧୟଃ ।
ଇତି ତାମ୍ବୁଳଂ । ୧୪ ।

ଇଦଂ ଫଳଂ ମାୟାଦେବ ସ୍ଥାପିତଂ ପୁରତସ୍ତବ ।
ତେନମେ ସଫଳ ବାପ୍ତି ର୍ଭବେଜନ୍ମନି ଜନ୍ମନି ।
ପ୍ରତି ପୁଣୀ ଫଳଂ । ୧୫ ।

ଚତୁର୍ବର୍ତ୍ତି ସମାଯୁକ୍ତଂ ଗୋ ଘୃତେନଂ ଚ ପୂରିତଂ ।
ନୀରାଜନେ ନ ସନ୍ତୁଷ୍ଟୋ ଭବତ୍ୱେବ ଜଗତ୍ପତିଃ ।
ଇତି ନୀରାଜନଂ । ୧୬ ।

ଯାନି ଯାନି ଚ ଦୁଃଖାନି ସର୍ବପାପ କୃତାନି ଚ ।
ତାନି ତାନି ବିନଶ୍ୟନ୍ତୁ ପ୍ରଦକ୍ଷିଣ ପଦେ ପଦେଃ ।
ଇତି ପ୍ରଦକ୍ଷିଣଂ । ୧୭ ।

—୦—

## ଏତଃ ପୁଷ୍ପାଞ୍ଜଳି ଗୃହୀତ୍ୱା ସ୍ତୁତି କୁର୍ଯ୍ୟାତ୍

ଜନ୍ମପ୍ସା ଭକ୍ତ୍ୟା ଯୋଗେନ ପତ୍ର ପୁଷ୍ପଂ ଫଳଂ ଜଳଂ ।
ନିବେଦିତଂ ଚ ନୈବେଦ୍ୟଂ ତଦ୍‌ଗୃହାଣାନୁ କମ୍ପୟା । ୧ ।
ତ୍ୱଦୀୟଂ ବସ୍ତୁ ଗୋବିନ୍ଦ ତୁଭ୍ୟ ମେବ ସମର୍ପୟେ ।
ଗୃହାଣ ସୁମୁଖୋ ଭୂତ୍ୱା ପ୍ରସୀଦ ପୁରୁଷୋତ୍ତମଂ । ୨ ।
ମନ୍ତ୍ର ହୀନଂ କ୍ରିୟା ହୀନଂ ଭକ୍ତି ହୀନଂ ଜନାର୍ଦ୍ଦନଂ ।
ଯତ୍ ପୂଜିତଂ ମାୟାଦେବ ପରିପୂର୍ଣ୍ଣଂ ତଦସ୍ତୁମେ । ୩ ।
ଅମୋଘଂ ପୁଣ୍ଡରୀକାକ୍ଷଂ ନୃସିଂହଂ ଦୈତ୍ୟସୂଦନଂ ।
ହୃଷୀକେଶଂ ଜଗନ୍ନାଥଂ ବାଗୀଶଂ ଗରୁଡଧ୍ୱଜଂ ।
ଜନାର୍ଦ୍ଦନଂ ଜନାଶ୍ରିତଂ ଜାନକୀ ବଲ୍ଲଭଂ ହରି । ୪ ।
ପ୍ରଣମାମି ସଦା ଭକ୍ତ୍ୟା ନାରାୟଣ ମତଃ ପରଂ ।
ଦୁର୍ଗମେ ବିଷମେ ଘୋର ଶତ୍ରୁଭି ପରିପୀଡ଼ିତେ । ୫ ।
ନିସ୍ତାର ଯସ୍ୱ ସର୍ବେଷୁ ତଥାଽନିଷ୍ଟ ଭୟେଷୁ ଚ ।
ନାମାନ୍ୟେତାନି ସଂକୀର୍ତ୍ତ୍ୟ ଇପ୍‌ସିତଂ ଫଳଂ ମାପ୍ନୁୟାତ୍ । ୬ ।
ସତ୍ୟ ନାରାୟଣ ଦେବଂ ବନ୍ଦେହଂ କାମଦଂ ପ୍ରଭୁଂ ।
ଲୀଳୟା ବିତତଂ ବିଶ୍ୱଂ ଯେନ ତସ୍ମୈ ନମୋ ନମଃ । ୮

———

# ଶ୍ରୀ ଶ୍ରୀ ସତ୍ୟନାରାୟଣ ମହାପ୍ରଭୁଙ୍କ
# ଆରତୀ

## ଧ୍ୟାନ—ମନ୍ତ୍ରଂ

—※—

ଶାନ୍ତାକରଂ ଭୁଜଗ ଶୟନଂ ପଦ୍ମନାଭଂ ସୁରେଶଂ
ବିଶ୍ୱାଧାରଂ ଗଗନ ସଦୃଶଂ ମେଘବର୍ଣ୍ଣଂ ଶୁଭାଙ୍ଗଂ ॥
ଲକ୍ଷ୍ମୀକାନ୍ତଂ କମଳ ନୟନଂ ଯୋଗୀଭିଃର୍ଧ୍ୟାନ ଗମ୍ୟଂ
ବନ୍ଦେ ବିଷ୍ଣୁଂ ଭବ ଭୟ ହରଂ ସର୍ବ ଲୋକୈକ ନାଥଂ ।



## ନବାକ୍ଷରୀ

# ଶ୍ରୀ ସତ୍ୟନାରାୟଣ ବ୍ରତପୂଜା

### ପ୍ରଥମଭାଗ——ବ୍ରତକଥାଖଣ୍ଡ

### ପଞ୍ଚଦେବତା ବନ୍ଦନା

※

ଶ୍ଳୋକଃ

ଖର୍ବଂ ସ୍ଥୂଳତନୁଂ ଗଜେନ୍ଦ୍ର ବଦନଂ ଲମ୍ବୋଦରଂ ସୁନ୍ଦରଂ
ପ୍ରସ୍ୟନ୍ଦନ ମଧୂଗନ୍ଧ ଲୁବ୍‌ଧ ମଧୂପଂ ବ୍ୟାଲୋଳ ଗଣ୍ଡସ୍ଥଳଂ ।
ଦନ୍ତାଘାତ ବିଦାରି ତାରି ରୁଧିରୈ ସିନ୍ଦୂର ଶୋଭାକରଂ
ବନ୍ଦେ ଶୈଳ-ସୁତା-ସୁତଂ ଗଣପତି ସିଦ୍ଧିପ୍ରଦଂ କାମଦଂ ॥

ଅନଶମଦ ବିଘୂର୍ଣ୍ଣଂ ସ୍ୱର୍ଣ୍ଣବର୍ଣ୍ଣ ସୁକର୍ଣ୍ଣ
ସୃଣିମଣି ବରପାଶା ଖ୍ୟାତ୍ୟହସ୍ତ ଦଧାନଂ ॥
ମନୁଜ ଦନୁଜ ଦେବୈ ସେବମାସ୍ୟାଙ୍ଘ୍ରିଂ ଯୁଗଂ
ବିମଳ କମଳ ମଧ୍ୟା ସୀନମାଡ଼େ ଗଣେଶଂ ॥
ନମୋ ଗଣେଶ ବିଘ୍ନେଶ ଗିରିଜାନନ୍ଦନ ପ୍ରଭୋ ।
ମମ ବିଘ୍ନ ନିହତ୍ୟାଶୁ ସର୍ବସିଦ୍ଧି ପ୍ରଦୋଭବଃ ॥

———

ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁଲଙ୍ଘୟତେ ଗିରିଂ ।
ଯତ୍‌କୃପା ତମହଂ ବନ୍ଦେଂ ପରମାନନ୍ଦ ମାଧବଂ ॥

———

ଗଣେଶ ନାରାୟଣଂ ରୁଦ୍ରେ ଅମ୍ବିକେ ଭାସ୍କରେ ତଥା ।
ଭିନ୍ନାଭିନ୍ନଂ ନ କର୍ତ୍ତବ୍ୟଂ ପଞ୍ଚଦେବଂ ନମୋଽସ୍ତୁତେଃ ॥

---

## ଶ୍ରୀ ପଞ୍ଚଦେବତା ବନ୍ଦନା ।

ଗୀତ

ନମସ୍ତେ ଦେବ ବିଘ୍ନରାଜ । ଗିରିଜା ଦେବୀଙ୍କ ତନୁଜ ॥
ଇନ୍ଦୁର ପୃଷ୍ଠେ ଆରୋହଣ । ଜଗତ କର ପର୍ଯ୍ୟଟନ ॥
ସକଳ ଦେବ ଅଗ୍ରେ ପୂଜା । ପାଅ ହରଷେ ବିଘ୍ନରାଜା ॥
ବ୍ରହ୍ମାଦି ସୁରାସୁର ଯେତେ । ପୂଜନ୍ତି ତୁମ୍ଭ ପାଦଗତେ ॥
ତୁମ୍ଭ ଚରଣେ ଯେଉଁ ଜନ । ପୂଜିଲେ ପାଏ ବିଦ୍ୟାଧନ ॥
ମୁହିଁ ଅଧମ ମୂର୍ଖଜନ । ପଶୁଛି ଶ୍ରୀପଦେ ଶରଣ ॥
ମନ କାମନା ଅବିଘ୍ନରେ । ପୁରାଅ ଜଣାଏଁ ତୁମ୍ଭରେ ॥
ଶ୍ରୀ ସତ୍ୟନାରାୟଣ ବ୍ରତ । ଲେଖିବି ପଦକରି ଦତ୍ତ ॥
ଏତିକ ଜଣାଏ ଗୋସାଇଁ । କରୁଣାକର ମୋର ଠାଇଁ ॥
ପୂଜା ସ୍ଥାନରେ ବିଜେକର । ଘେନନ୍ତୁ ସର୍ବ ଉପଚାର ।୧୦।
ନମସ୍ତେ ପ୍ରଭୁ ନାରାୟଣ । ନିର୍ବିକୁଣ୍ଠବାସୀ ଭଗବାନ ॥
ଲୋକ ଜନନୀ-ପ୍ରାଣ କାନ୍ତ । ଗରୁଡ଼ ବାହନ ଅଚ୍ୟୁତ ॥
ସମସ୍ତ ତୁମ୍ଭର ସର୍ଜନା । ଇଚ୍ଛାରେ କରୁଛ ପାଳନା ॥
ତୁମ୍ଭର ଲୀଳାରେ ଜଗତ । ଚଳୁଛି ଆହେ ଆଦିଭୂତ ॥
ସକଳ ଭୂତେ ତୁମ୍ଭେ ବସ । ହେ ପ୍ରଭୁ ଅଖିଳ ନିବାସ ॥
ଭକତ ହୃଦେ ସଦା ଥାଅ । ଅଭକ୍ତେ ଦେଖା କେବେ ନୁହ ॥
ହେ ପ୍ରଭୁ ଜଗତ ଜୀବନ । ଉଦ୍ଧରି ରଖ ଦୀନଜନ ॥
ଭକ୍ତ କାମନା କର ପୂର୍ତ୍ତି । କରୁଛି ପାଦେ ନିବେଦନ ॥
ପୂଜା ସ୍ଥାନରେ ଆସିକରି । ସମ୍ଭାର ଘେନ ବେଗେ ହରି ॥

ନମସ୍ତେ ଶ୍ରୀଚନ୍ଦ୍ରଶେଖର । ବୃଷ ବାହନ ଯୋଗେଶ୍ୱର ।୨୦
ଶ୍ମଶାନବାସୀ ଦିଗମ୍ବର । ଭସ୍ମ ଧାରଣ ଭୂତେଶ୍ୱର ॥
କାଳସ୍ୱରୂପୀ ମହେଶ୍ୱର । ନିଦେଶ କରନ୍ତା ଈଶ୍ୱର ॥
ରୁଦ୍ର ଗଣଙ୍କୁ ସଙ୍ଗଚର । ଯେମନେ ଆନନ୍ଦେ ବିହର ॥
ଭକତ ବନ୍ଧୁ ଶିବାବର । ବିପଦ ନାଶି ରକ୍ଷାକର ॥
ସୁଦୟା ବିହ୍ୱଳ ଈଶାନ । ଅଜ୍ଞାନେ ଦିଅ ସଦଜ୍ଞାନ ॥
ଏ ପୂଜା ସ୍ଥାନେ ଉମାବର । ଆସି ଯେମନ୍ତ ଉପକ୍ରର ॥
ଯଜମାନର ମନପୂର୍ଣ୍ଣ । କରନ୍ତୁ ହେ ପଞ୍ଚ ଆନନ ॥
ନମସ୍ତେ ଦେବୀ ଶୈଳସୁତା । ଆଦି ଅନାଦି ସ୍ୱୟଂମାତା ॥
ଶ୍ରୀ ଦୁର୍ଗା ଦୁର୍ଗତି ତାରିଣୀ । ଅଭୟା ଶରଣ ରକ୍ଷଣି ॥
ଭୈରବୀ ଦନୁଜ ଦଳନୀ । ଭବାନୀ ଶଙ୍କର ମୋହିନୀ ॥
ଭକତ ଜନ ଚିନ୍ତାମଣି । ତୁମ୍ଭେ ମା ଶରଣ ରକ୍ଷଣି ॥
ଅନେକ ରୂପେ ଅବତରି । ପୂଜା ପାଅ ଗୋ ମାହେଶ୍ୱରୀ ॥
ଯେ ଜନ ତୁମ୍ଭଙ୍କୁ ପୂଜଇ । ତାହାକୁ ରଖ ମହାମାୟୀ ॥
ତୁମ୍ଭର ମହିମାକୁ କେହି । ବର୍ଣ୍ଣିନ ପାରେ ଦେହଦେହି ॥
ମୁଁ ମୂଢ଼ କିଛି ନ ଜାଣଇଁ । ତୁମ୍ଭଙ୍କୁ କି ବର୍ଣ୍ଣିବ ମୁହିଁ ॥
ଏ ପୂଜା ସ୍ଥାନେ ଆସିମାତ । ପୁରାଅ ଯାନ ମନୋରଥ ॥
ନମସ୍ତେ ଦେବ ଦିବାକର । କଶ୍ୟପ ଋଷିଙ୍କ କୁମର ॥
ଏକ ରଥାଙ୍ଗ ରଥେ ଶୂନ୍ୟେ । ବିରାଜି ଥାଅ ଲକ୍ଷଯୁଗେ ॥
ହେ ହରିଦଶ୍ୱ ଗ୍ରହପତି । ବ୍ୟୋମେ ବିହରତେ କରଗତି ॥
ବିକଟ ଅନ୍ଧକାର ନାଶ । କରଣେ ଅବନି ପ୍ରକାଶ ॥
ତୁମ୍ଭର ହେତୁ ସର୍ବ ପ୍ରାଣୀ । ଜାଣନ୍ତି ଦିବସ ରଜନୀ ॥
ତୁମ୍ଭେ ହେ ବ୍ରହ୍ମା ବିଷ୍ଣୁ ଶିବ । ଦିଗ ପାଳାଦି ସର୍ବ ଦେବ ॥
ତୁମ୍ଭେ ବିରଞ୍ଚି ନାରାୟଣ । ସଂସାର କର ହେ ପାଳନ ॥

ହେ ଧର୍ମ ସାକ୍ଷୀରୂପେ ଥାଅ । ନିତ ଯେ ଉଦେ ଅସ୍ତ ହୁଅ ॥
ପ୍ରାଣୀଙ୍କ ଭଲ ମନ୍ଦ ଭାବ । ସର୍ବଦା ଦେଖୁନ୍ତ ହେ ଦେବ ॥
ଆଗେଁ ତୁମ୍ଭଙ୍କୁ ଯେହୁଜନ । ପୂଜିଲେ କରି ଯଜମାନ ॥
ଆସିଣ ଏବେ ପୂଜା ସ୍ଥାନ । ହେବନ୍ତୁ ଉପସ୍ଥିର ମାନ ॥
ହେ ପ୍ରଭୁ ଦେବ ଗ୍ରୁପ୍ଳାକାନ୍ତ । ପୂର୍ଣ୍ଣ କରନ୍ତୁ ମନୋରଥ ॥
ବନ୍ଦଇ ମସ୍ତ୍ୟ କଚ୍ଛ କୋଳ । ନୃସିଂହ ଆଦବନ୍ତି ଦୁଲ୍ଲଭ । ୫୦ ।
ଯମଦଗ୍ନି ଜ ରାମଚନ୍ଦ୍ର । କଂସ ସୂଦନ ବଳଭଦ୍ର ॥
ବଉଦ କଳର୍କି ସ୍ୱରୂପ । ହେ ପ୍ରଭୁ ଅବ୍ୟକ୍ତ ଅରୂପ ॥
ଶ୍ରୀ ସତ୍ୟନାରାୟଣ ବ୍ରତ । ମୋ ମୁଖେ କରାଅ ଉକତ ॥
ବନ୍ଦଇ ଦେବୀ କମଳାସୀ । କ୍ଷୀରାବ୍ଧି ସୁତା ପଦ୍ମାସିନୀ ॥
ବନ୍ଦଇ ଦେବୀ ବୀଣାପାଣି । ବାଗ୍‌ଦେବୀ ମରାଳ ବାହିନୀ ॥
ବ୍ରହ୍ମ ସୁତା ପଦ୍ମାସିନୀ । ଓଁକାରରୂପୀ ସ୍ୱରୂପିଣୀ ॥
ବନ୍ଦଇ ସକଳ ଅମର । ଯକ୍ଷ ଗନ୍ଧର୍ବ ଯେ କିନ୍ନର ॥
ସ୍ୱିତା ଶଶାଙ୍କ ଭୂମିଜ । ବୁଧ ରବିଜଶୁକ୍ର ଇଜ୍ୟ ॥
ତିଥି ନକ୍ଷତ୍ର ରାଶିଯୋଗ । କରଣ ବାର୍ହସ୍ପତ୍ୟ ଭାଗ ॥
ଗଙ୍ଗା ଯମୁନା ବୀଣାପାଣି । ବନ୍ଦଇ ତ୍ରିପଥ-ଗାମିନୀ । ୬ ।
ଚତୁରଧାମ ବାରାଣସୀ । ଗୋପ ମଥୁରା କୁରୁକାଶୀ ॥
ପୁରୀ ଅଯୋଧ୍ୟା ବୃନ୍ଦାବନ । ଯେ ହରଦ୍ୱାର ପୁଣ୍ୟଧାମ ॥
ଭାରତେ ଯେତେ ତୀର୍ଥସ୍ଥାନ । ସକଳ ଦେବାଦେବୀ ଗଣ ॥
ଗୋରୁ ବ୍ରାହ୍ମଣ ପିତା ମାତା । ବନ୍ଦଇଁ ଶ୍ରୀଗୁରୁ ଦେବତା ॥
ଶ୍ରୀ ଗ୍ରାମ ଦେବୀଙ୍କ ଚରଣେ । ବନ୍ଦନା କରେ ତୋଷମନେ ॥
ଯେ ବେଦବ୍ୟାସ ମହାମୁନି । ତାହାଙ୍କ ପାଦେ ମୋ ବଇନୀ ॥
କହଇ ମନୋହର ସୁତ । ସାକ୍ଷୀ କର ହେ ଲକ୍ଷ୍ମୀକାନ୍ତ ॥
ଶ୍ରୀ ସର୍ବଦେବଦେବୀ ପାଦେ । ମେହେର ନାରାୟଣ ବନ୍ଦେ ॥

## ପ୍ରଥମ—ଅଧ୍ୟାୟ

## ଶ୍ରୀ ସତ୍ୟନାରାୟଣ ବନ୍ଦନା

### ଶ୍ଳୋକ

ଅମୋଘଂ ପୁଣ୍ଡରୀକାକ୍ଷଂ ନୃସିଂହ ଦୈତ୍ୟସୂଦନଂ
ହୃଷୀକେଶ ଜଗନ୍ନାଥଂ ବାଗୀଶଂ ବରଦାୟକଂ । ୧ ।
ଗୁଣତ୍ରୟଂ ଗୁଣାତୀତଂ ଗୋବିନ୍ଦ ଗରୁଡ଼ଧ୍ୱଜଂ ।
ଜନାର୍ଦ୍ଦନଂ ଜନାତୀତଂ ଜାନକୀ ବଲ୍ଲଭଂ ହରି । ୨ ।
ପ୍ରଣମାମିଂ ସଦାଭକ୍ତ୍ୟାଂ ନାରାୟଣ ମତଃ ପରଂ ।
ଦୁର୍ଗମେ ବିଷମେ ଘୋରେ ଶତ୍ରୁଭି ପରପୀଡ଼ିତେ । ୩ ।

---

## ପ୍ରଥମ—ଅଧ୍ୟାୟ

## ଶ୍ରୀ ସତ୍ୟନାରାୟଣ ବନ୍ଦନା

### ( ଗୀତ )

ନମଇଁ ସତ୍ୟନାରାୟଣ । ମଙ୍ଗଳ ମୟ ଭଗବାନ ॥
ଅମଳ କମଳ ନୟନ । ନୃସିଂହ ଦଇତ ଦଳନ ॥
ଜଗତନାଥ ହୃଷୀକେଶ । ହେ ବରଦାତା ବାଣୀଈଶ । ୧ ।
ହେ ଗୁଣାତୀତ ତ୍ରୟଗୁଣ । ଗୋବିନ୍ଦ ଗରୁଡ଼ ବାହନ ॥
ହେ ଜନାତୀତ ଜନାର୍ଦ୍ଦନ । ଶ୍ରୀହରି ଜାନକୀ ରମଣ ॥
ସଦା ମୁଁ ଭକ୍ତିରେ ଶରଣ । ପଶିଲି ଆହେ ନାରାୟଣ ॥
ଘୋର ଦୁର୍ଗମ ସଙ୍କଟରୁ । ଶତ୍ରୁଙ୍କ ପୀଡ଼ା କବଳରୁ । ୩ ।

ନମସ୍କାରସ୍ତ୍ୱ ସର୍ବେଷୁ ତଥାନଷ୍ଟ ଭଟେଷୁଚ ।
ନାମାନ୍ୟେ ତାନି ସଂକୀର୍ତ୍ତ୍ୟ ରପ୍‌ସିତଂ ଫଳମାପ୍ନୁୟାତ । ୪ ।
ସତ୍ୟ ନାରାୟଣଂ ଦେବଂ ବନ୍ଦେହଂ କାମଦଂ ପ୍ରଭୁଂ ।
ଲୀଳୟା ବିତତଂ ବିଶ୍ୱଂ ଯେନ ତସ୍ମୈ ନମୋ ନମଃ । ୫ ।

—*—

ସର୍ବାରିଷ୍ଟରୁ ଦୀନଜନ । ଉଦ୍ଧାର କର ନାରାୟଣ ॥
ତୁମ୍ଭ ଏ ନାମମାନ ନିତ୍ୟ । ଯେ ନର କୀର୍ତ୍ତନ କରନ୍ତି ॥
ମନ ବାଞ୍ଛିତ ଫଳପାନ୍ତି । ଅନ୍ତେ ସେ ସୁଗତି ଲଭନ୍ତି । ୪ ।
ଯେ ପ୍ରଭୁ ସତ୍ୟନାରାୟଣ । କରନ୍ତି ମନବାଞ୍ଛାପୂର୍ଣ୍ଣ ॥
ସେ ହରି ପଙ୍କଜ ଚରଣ । ନିରତେ କରଇ ବନ୍ଦନ ॥
ଯାହାଙ୍କ ମାୟାଏ ସଂସାର । କେ ତାହା କରିବ ଗୋଚର ॥
ସେ ହରି ପଦ୍ମପାଦେ ମୋର । ଅନୁବରତେ ନମସ୍କାର ॥
କହେ ମେହେର ନାରାୟଣ । ଭରସା ସତ୍ୟ ନାରାୟଣ । ୫ ।



## ଅଥଃ ଶ୍ରୀ ସତ୍ୟନାରାୟଣ ବ୍ରତକଥା-ପ୍ରାରମ୍ଭ

"ମୂଳ ସଂସ୍କୃତ-ଶ୍ଳୋକ"

ଶ୍ରୀ ସୂତ ଶୌନକ ସମ୍ବାଦ ।

ଏକଦା ମୁନୟଃ ସର୍ବେ ସର୍ବ ଲୋକ ହିତେ ରତାଃ ।
ସୁରମ୍ୟେ ନୈମିଷ୍ୟାରଣ୍ୟେ ଗୋଷ୍ଠି ଚକ୍ରୁ ମନୋରମାଃ । ୧ ।
ତଦନ୍ତରେ ମହାତେଜା ବ୍ୟାସଶିଷ୍ୟୋ ମହାଯଶାଃ ।
ସୂତଃ ଶିଷ୍ୟ ଗଣୈର୍ୟୁକ୍ତଃ ସମାୟାତୋ ହରିଂ ସ୍ମରନ୍ । ୨ ।
ତମାୟାନ୍ତଂ ସମାଲୋକ୍ୟ ସୂତ ଶାସ୍ତ୍ରାର୍ଥପାରଗଂ ।
ମୁନୟଃସର୍ବେ ସମୁତ୍ତସ୍ଥୁ ଶୌନକାଦ୍ୟା ସୁପୋଧନାଃ । ୩ ।
ସୋଽପିତାନ୍ ସହସା ଭକ୍ତ୍ୟା ମୁନୀନ୍ ପରମବୈଷ୍ଣବାନ୍ ।
ସନାମ ଦଣ୍ଡବଦ୍ଭୂମୌ ସର୍ବଧର୍ମବିଦାଂ ବରଂ । ୪ ।

---

## ଶ୍ରୀ ସତ୍ୟନାରାୟଣ ବ୍ରତକଥା ଆରମ୍ଭ

ଶ୍ରୀ ସୂତ ଶୌନକ ସମ୍ବାଦ ।

( ଗୀତ )

| | | |
|---|---|---|
| ଶୁଣ ସକଳ ସୁପଣ୍ଡିତ | ଶ୍ରୀ ସତ୍ୟନାରାୟଣ ବ୍ରତ | ॥ |
| ଏକ ସମୟେ ମୁନିମାନେ | ସଂସାର ହିତ ପାଇଁ ମନେ | ॥ |
| ନୈମିଷ୍ୟାରଣ୍ୟେ ରମ୍ୟସ୍ଥଳେ | ସଭା କରିଣ ବସିଥିଲେ | ॥ |
| ଏମନ୍ତ ବେଳେ ବ୍ୟାସ ଶିଷ୍ୟ | ମହାତେଜସ୍ୱୀ ସୂତ ଋଷ୍ୟ | ॥ |
| ଶିଷ୍ୟଗଣଙ୍କୁ ସଙ୍ଗେ ଘେନି | ହରିଙ୍କ ନାମ ଗାଇ ମୁନି | । ୨ । |
| ସେଠାରେ ପ୍ରବେଶ ହୋଇଲେ | ଦେଖି ମୁନିଏ ତୋଷ ହେଲେ | ॥ |
| ଶୌନକ ଆଦି ମୁନିଗଣ | ଆସନୁଁ ଉଠିଣ ବହନ | । ୩ । |
| ପରମ ଭକ୍ତିଭାବ ଚିତ୍ତେ | ପୂଜିଲେ ସୂତ ପାଦାଗ୍ରତେ | ॥ |
| ମୁନିମାନଙ୍କୁ ତହୁଁ ସୂତ | ଆନନ୍ଦେ କଲେ ଦଣ୍ଡବତ | । ୪ । |

ବରିସନେ ମହାବୁଦ୍ଧ ସ୍ତେ ଇ ଂତ୍ତେ ମୁନି ସତ୍ତମୈଃ ।
ଉବାସ ସଦସୋ ମଧ୍ୟେ ସର୍ବୈଃ ଶିଷ୍ୟଗଣୈ ର୍ବୃତାଃ । ୫ ।
ତମୋପବିଷ୍ଟ ସୂତଂ ତଂ ଶୌନକ ମୁନି ସତ୍ତମଃ ।
ବଦ୍ଧାଞ୍ଜଳି ମିମାଂ ବାଚମୁବାଚ ବିନୟାନ୍ୱିତଂ । ୬ ।

ଶୌନକ ଉବାଚ ।

ମହର୍ଷେ ସୂତ ସର୍ବଜ୍ଞ କଳିକାଳେ ସମାଗତେ ।
କେନୋପାୟେନ ଭଗବାନ୍ ହରିଭକ୍ତି ର୍ଭବେ ନୃଣାଂ । ୭ ।
କଳୌ ସର୍ବେ ଭବିଷ୍ୟନ୍ତି ପାପକର୍ମପରାୟଣାଃ ।
ବେଦ ବିଦ୍ୟା ବିହୀନାଶ୍ଚ ତେଷାଂ ଶ୍ରେୟଃ କଥଂ ଭବେତ୍ । ୮ ।

---

ମୁନିଏ ହୋଇ ତୋଷମନ । ସୂତଙ୍କୁ ଦେଲେ ଦିବ୍ୟାସନ ॥
ତାହାଙ୍କୁ ଦେଖି ଶ୍ରଦ୍ଧା ଭକ୍ତି । ଆନନ୍ଦେ ସୂତ ମହାଯତି ॥
ଶିଷ୍ୟମାନଙ୍କୁ ସଙ୍ଗେ ନେଇ । ସଭାରେ ବସିଲେ ସେ ଯାଇ । ୫ ।
ଆନନ୍ଦ ମନେ ସର୍ବଦ୍ୱିଜା । ଚରଣେ କଲେ ଦିବ୍ୟ ପୂଜା ॥
ସୂତ ବସିବା ଅନ୍ତେ ପୁଣି । ହରଷେ ଶଉନକ ମୁନି ॥
କର ଯୋଡ଼ିକେ ତାଙ୍କ ଆଗେ । କହନ୍ତି ଭକ୍ତି ସ୍ନେହ ଯୋଗେ । ୬ ।

ଶୌନକ ଉବାଚ ।

ହେ ମହାମୁନି ତୁମ୍ଭେ ବିଜ୍ଞ । ଆମ୍ଭେ ସମସ୍ତେ ଅଟୁ ଅଜ୍ଞ ॥
ବ୍ୟାସଙ୍କ ଅନୁଗ୍ରହେ ସିନା । ସକଳ ଜାଣ ମହାମନା ॥
କଳିର ଆଶ୍ରମେ ପ୍ରାଣୀଏ । କରିବେ କେବଣ ଉପାୟେ ॥
ବିଷ୍ଣୁ ଭକତି କେମନ୍ତେହେବେ । ମାନବେ ମୁକତି ଲଭିବେ । ୭ ।
କଳି କାଳରେ ଯେତେ ଜନ । ପାପ କର୍ମରେ ଦେବେ ମନ ॥
ପାପେ ପ୍ରବର୍ତ୍ତି ସର୍ବଜନ । ବେଦ ବିଦ୍ୟାରେ ହେବେ ହୀନ ॥
ତାଙ୍କର ମଙ୍ଗଳ ବିଧାନ । କହ କପରି ହେବେ ମୁନ୍ୟ । ୮ ।

କଳାବନ୍ନଗତା ପ୍ରାଣା ଲୋକା ଅଳ୍ପାୟୁଷ ସ୍ତଥା ।
ନର୍ଦ୍ଧନାଶ୍ଚ ଭବଷ୍ୟନ୍ତ ନାନାପୀଡ଼ା ପ୍ରପୀଡ଼ିତା । ୯ ।

ପ୍ରପ୍ୟାସାଧ୍ୟସୁକୃତଃ ଶାସ୍ତ୍ରେଷ୍ୱ ପ୍ରଥିତଂ ଦ୍ୱିଜ ।
ତସ୍ୟାଙ୍କୋପି ତରିଷ୍ୟନ୍ତ କଳୌ ନ ସୁକୃତଂ ଜନାଃ । ୧୦ ।

ସୁକୃତେଷ୍ୱ ବନଷ୍ଟେଷୁ ପ୍ରବୃତ୍ତେ ପାପକର୍ମଣି ।
ସର୍ବଂଷଃ ପ୍ରଳୟଂ ସର୍ବେ ଗମିଷ୍ୟନ୍ତ ଦୁରାଶୟାଃ । ୧୧ ।

ସ୍ୱଳ୍ପଶ୍ରମୈରଳ୍ପବତ୍ତୈ ରଳ୍ପକାଳେଶ୍ଚ ସତ୍ତମ ।
ଯଥା ଭବେନ୍ମହାପୁଣ୍ୟଂ ତଥା କଥୟ ସୂତ ନଃ । ୧୨ ।

---

କଳି କାଳରେ ଜନ ପ୍ରାଣ । କେବଳ ଅନ୍ନର ଅଧୀନ
ଦରିଦ୍ର ଅଳ୍ପାୟୁ ହୋଇବେ । ନାନା ରୋଗରେ ପଡ଼ିଥିବେ । ୯ ।

ଯତ୍ନେ ସୁସାଧ୍ୟ କାର୍ଯ୍ୟ କଲେ । ସୁପୁଣ୍ୟ ଲଭିବେଟି ଭଲେ ॥
ଏ ଶାସ୍ତ୍ର ସମ୍ମତ ବଚନ । ଲେଖି ଅଛନ୍ତି ବିପ୍ରଗଣ ॥
କଷ୍ଟ ସହଣ ମହାପୁଣ୍ୟ । କଳିରେ ନ କରିବେ ଜନ । ୧୦ ।

ସୁପୁଣ୍ୟ ପଥକୁ ହୁଡିବେ । ପାପରେ ଯେଣୁ ପ୍ରବର୍ତ୍ତିବେ ॥
କୁଳ ସର୍ବଂଶେ ପାପୀଗଣ । ସମୂଳେ ହୋଇବେ ନିଧନ ॥
ଏ ସର୍ବ ଶ୍ରବଣ ମୋ ମନ । ଆକୁଳ ହୁଏ ଅନୁଦିନ । ୧୧ ।

ଅଳପ ଅର୍ଥ ଅଳ୍ପଶ୍ରମେ । ଇଚ୍ଛିତ ଲଭ ଅଳ୍ପକର୍ମେ ॥
ଅଚିରେ ଫଳ ଯେ ମିଳିବ । ଜଗତେ ପୁଣ୍ୟ ବିକାଶିବ ॥
ସେ କଥା ଆମ୍ଭଙ୍କୁ ବୁଝାଇ । କହନ୍ତୁ ଆହେ ତପୀସାଇଁ । ୧୨ ।

ଯସ୍ୟୋପଦେଶତଃ ପୁଣ୍ୟଂ ପାପଂ ବା କୁରୁତେ ଜନଃ ।
ସତଦ୍ଭାଗୀ ଭବେନ୍ମର୍ତ୍ତ୍ୟ ଇତି ଶାସ୍ତ୍ରେଷୁ ନିର୍ଣ୍ଣୟଃ । ୧୩ ।

ପୁଣ୍ୟୋପଦେଶୀ ସଦସ୍ତୁ କୈତବଶ୍ଚ ବିବର୍ଜିତଃ ।
ଅପାପା ନ ବିରୋଧୀ ଚ ଚଣ୍ଡାର କେଶବୋପମାଃ । ୧୪ ।

ଜ୍ଞାନ ସଂପ୍ରାପ୍ୟ ସଂସାରେ ଯ ଇତରେଭ୍ୟୋ ନ ଯଚ୍ଛତି ।
ଜ୍ଞାନରୂପୀ ହରିସ୍ତସ୍ମିନ୍ ପ୍ରସନ୍ନଇବ ନେଷ୍ୟତେ । ୧୫ ।

ଜ୍ଞାନରତ୍ନେଷୁ ରତ୍ନେଷୁ ପର ସନ୍ତୋଷ କୃନ୍ନର ।
ସଜ୍ଞେୟଃ ପୁଣ୍ୟ ବାନ୍ନୂନଂ ନରରୂପୋଧରେ ହରିଃ । ୧୬ ।

---

ଯା ଉପଦେଶେ ପାପ ପୁଣ୍ୟ । କରଇ ଅବା ଯେତୁ ଜନ ॥
ତା ଅଂଶଭାଗୀ ସେହୁ ଲୋକ । ହୁଅଇ ହେ ମୁନି ନାୟକ ॥
ଶାସ୍ତ୍ରେ ଏ ହୋଇଛୁ ଲିଖିତ । ସକଳ ଉପଦେଶ ମତ ॥ ୧୩ ।

ସୁପୁଣ୍ୟ ଯେ ଉପଦେଶକ । ସୁକର୍ମୀ ଦସ୍ୟୁକ୍ତୁ ଯେ ଲୋକ ॥
କୂଟ, କପଟ ବିବର୍ଜିତ । ହୋଇ ଯେ ଥାଆନ୍ତି ନିରତ ॥
ଏ ଗୁରୁ ବିଷ୍ଣୁଙ୍କ ସମାନ । ତାଙ୍କୁ ନ ଲାଗେ ପାପମାନ । ୧୪ ।

ସୁଜ୍ଞାନୀ ହୋ'ଇ ଯେଉଁ ପ୍ରାଣୀ । ନ ଦିଏ ଉପଦେଶ ଜାଣି ॥
ସେ ନର ଜ୍ଞାନରୂପୀ ହରି । ପଦକୁ ନ ପାରଇ ଧରି ॥
ଜ୍ଞାନ ସ୍ୱରୂପୀ ନାରାୟଣ । ତା ପ୍ରତି ହୋନ୍ତି ଅପ୍ରସନ୍ନ । ୧୫ ।

ଯେ ଜନ ଜ୍ଞାନ ରତ୍ନଦାନ । ତୋଷଇ ଅନ୍ୟକୁ ଦେଇଣ ॥
ସେ ନର ଅଟେ ପୁଣ୍ୟବାନ । ଜଗତେ ଧନ୍ୟ ତା ଜୀବନ ॥
ସେ ନର ହରିଅଂଶେ ଜାତ । ହୋଇଣ ଥାଏ ଏ ଜଗତ ॥

ବ୍ରତେନ ତପସା କିଂ ବା ପ୍ରାପ୍ୟତେ ବାଞ୍ଛିତ ଫଳଂ ।
ସର୍ବଂ ତଦ୍ ଶ୍ରୋତୁମିଚ୍ଛାମି କଥୟସ୍ୱ ମହାମତେ । ୧୭ ।

ତ୍ୱମେବ ମୁନି ଶାର୍ଦ୍ଦୂଳ ବେଦ ବେଦାଙ୍ଗପାରଗ ।
ତଦ୍ବୃତେ ନହି ବକ୍ତାନ୍ୟୋ ଯତସ୍ତ୍ୱଂ ବ୍ୟାସଶିଷ୍ଟିତଃ । ୧୮ ।

ସୂତ ଉବାଚ ।

ଧନ୍ୟୋଽସି ତ୍ୱଂ ମୁନି ଶ୍ରେଷ୍ଠ ତ୍ୱମେବ ବୈଷ୍ଣବାଗ୍ରଣୀ ।
ଯତଃ ସମସ୍ତଲୋକାନାଂ ହିତମିଚ୍ଛସି ସର୍ବଦାଃ । ୧୯ ।

---

କି ବ୍ରତ କବା ତପ ଫଳେ । ବାଞ୍ଛିତ ମିଳିବ ତତ୍କାଳେ ॥
ସେ କଥା କହନ୍ତୁ ଆପଣ । ଶୁଣିବା ପାଇଁ ବଳେ ମନ । ୧୭ ।

ହେ ଶେଷେ ମୁନିଙ୍କର ମଧ୍ୟେ । ଶ୍ରେଷ୍ଠ ଅଟଇ ବେଦବାଦେ ॥
ତୁମ୍ଭର ବିନା ଅନ୍ୟ କେହି । କହି ପାରିବ ବଶୁ ନାହିଁ ॥
ବ୍ୟାସଙ୍କଠାରୁ ତ ଆପଣ । ପାଇଅଛନ୍ତି ଦିବ୍ୟଜ୍ଞାନ ॥
ଆମ୍ଭେ ଯେ ପଚ୍ଛରିଲୁଁ ଯାହା । ସେ କଥା କହ ମୁନି ନାହା । ୧୮ ।

ସୂତ ଉବାଚ ।

ଶୌନକାଦିଙ୍କ ବାକ୍ୟେ ସୂତ । ବୋଲନ୍ତି ହୋଇ କୃତ୍ୟ କୃତ୍ୟ ॥
ଧନ୍ୟ ହେ ଶଉନକ ମୁନି । ବିଶ୍ୱରେ ତୁମ୍ଭେ ମହାଜ୍ଞାନୀ ॥
ମୁନିଙ୍କ ମଧ୍ୟେ ଶ୍ରେଷ୍ଠ ପୁଣି । ବୈଷ୍ଣବେ ଅଟତ ଅଗ୍ରଣୀ ॥
ସଂସାରେ ଜନ ଉପକାର । ସର୍ବଦା ଇଚ୍ଛ ମୁନିବର । ୧୯ ।

ଶୃଣୁ ଶୌନକ ବକ୍ଷ୍ୟାମି ଯତ୍ତ୍ୱୟା ଶ୍ରୋତୁ ମିଷ୍ୟତେ ।
ନାରଦେନୈବ ମୁକ୍ତସନ୍ ଭଗବାନ୍ କମଳାପତିଃ । ୨୦ ।
ସୁରର୍ଷୟେ ଯଥୈବାହ ତତ୍ ଶୃଣୁଧ୍ୱ ସମାହିତଃ ।
ନାରଦ ସନ୍ମୁଖେ ଯତ୍ତୁ କଥିତଃ ପୁରୁଷୋତ୍ତମଃ । ୨୧ ।

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ-
ବ୍ରତ ପୂଜା କଥାୟାଂ ଶ୍ରୀ ସୂତ ଶୌନକ ସମ୍ବାଦେ
ନାମ ପ୍ରଥମୋଽଧ୍ୟାୟଃ ।

---

ଆହେ ଶୌନକ ମହାମୁନି । ଯେ ପ୍ରଶ୍ନ ପଚାରିଲ ଆଣି ॥
ସେ କଥା ଶୁଣିଛି ମୁଁ ଯାହା । କହିବି ତୁମ୍ଭ ଆଗେ ତାହା ।୨୦।
ନାରଦ ଆଗେ ଭବତ୍ରାହ୍ମି । ଭୂତ ପୂର୍ବରେ ଥିଲେ କହି ॥
ସେ କଥା ଶୁଣିଛି ମୁଁ ଯାହା । କହିବି ତୁମ୍ଭ ଆଗେ ତାହା ॥
ଶ୍ରୀ ସୂତ ଶୌନକ ସମ୍ବାଦ । ସୁଜନେ ଶୁଣି ହୁଅ ବୋଧ ॥
ଆନନ୍ଦେ ହରି ହରି ବୋଲ । ଲଭିବ ପରମ ମଙ୍ଗଳ ॥
ଶ୍ରୀ ସତ୍ୟନାରାୟଣ ବ୍ରତ । ପ୍ରଥମ ଅଧ୍ୟା ସମାପତ ॥
ଶ୍ରୀ ସତ୍ୟନାରାୟଣ ପାଦେ । ମେହେରୁ ନାରାୟଣ ବନ୍ଦେ ॥
କହଇ ମନୋହର ସୁତ । ଭରସା ପ୍ରଭୁ ଦେବ ସତ୍ୟ ॥

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ
ବ୍ରତ ପୂଜା କଥାୟାଂ ଶ୍ରୀ ସୂତ ଶୌନକ
ସମ୍ବାଦେ ନାମ ପ୍ରଥମୋଽଧ୍ୟାୟଃ ।



## ଦ୍ୱିତୀୟ ଅଧ୍ୟାୟ ।
## ଅଥ ଶ୍ରୀ ନାରଦ ଋଷି ଓ ଭଗବାନଙ୍କ ବ୍ରତ କଥୋପ କଥନ ।

ସୂତ ଉବାଚ ।

ଏକଦା ନାରଦୋ ଯୋଗୀ ପରାନୁଗ୍ରହ ବାଞ୍ଛୟା ।
ପର୍ଯ୍ୟଟନ୍ ବିବିଧାନ୍ ଲୋକାନ୍ ମର୍ତ୍ତ୍ୟଲୋକମୁପାଗମତ୍ ।୧।
ତତ୍ର ଦୃଷ୍ଟ୍ୱା ଜନାଃ ସର୍ବେ ନାନାକ୍ଳେଶସମନ୍ୱିତାଃ ।
ନାନାଯୋନି ସମୁତ୍ପନ୍ନାଃ କ୍ଳିଶ୍ୟନ୍ତେ ପାପ କର୍ମଭିଃ ।୨।
କେନୋପାୟେନ ଚୈତେଷାଂ ଦୁଃଖ ନାଶୋ ଭବେଦ୍ଧ୍ରୁବଂ ।
ଇତି ସଂଚିନ୍ତ୍ୟ ମନସା ବିଷ୍ଣୁଲୋକଂ ଗତସ୍ତଦା ।୩।

---

## ଦ୍ୱିତୀୟ ଅଧ୍ୟାୟ ।
## ଶ୍ରୀ ନାରଦଋଷି ଓ ଭଗବାନଙ୍କ ବ୍ରତ କଥୋପକଥନଂ

ସୂତ ଉବାଚ ।

ସୂତ କହନ୍ତି ମୁନିମାନେ । ଶୁଣ ଆନନ୍ଦେ ଧୀରମନେ ॥
ଦିନେ ନାରଦ ମହାମୁନି । ଜନଙ୍କ ଉପକାର ଗୁଣି ॥
ନାନା ଲୋକରୁ ଭ୍ରମି ଆସି । ମର୍ତ୍ତ୍ୟରେ ପ୍ରବେଶିଲେ ଋଷି ।୧।
ଦେଖିଲେ କେତେକ ଯେ ଜନ । ଦୁଃଖରେ ହୋଇଛନ୍ତି ମଗ୍ନ ॥
ନାନା ଯୋନିରେ ଜନ୍ମି ପ୍ରାଣୀ । କଷ୍ଟ ଭୋଗନ୍ତି କେତେ ପୁଣି ॥
ନାନା କୁକର୍ମ କରି ନିତି । ପାପରେ ମଗ୍ନ ହୋଇଛନ୍ତି ।୨।
କେଉଁ ଉପାୟେ କରି ଜନ । ଦୁଃଖରୁ ହେବେ ପରିତ୍ରାଣ ॥
ତାହାଙ୍କ କଷ୍ଟ କି ପ୍ରକାର । ଯେଉଁଥେ ସମୂଳେ ହେବ ଦୂର ॥
ଏ ସର୍ବ ଦେଖିଣ ନାରଦ । ମନରେ ହୋଇଣ ବିଷାଦ ॥
ଏହା ଚିନ୍ତିଣ ମୁନିବର । ଗମିଲେ ବଇକୁଣ୍ଠ ପୁର ।୩।

ତନ୍ନାରାୟଣଂ ଦେବଂ ଶୁକ୍ଳବର୍ଣ୍ଣଂ ଚତୁର୍ଭୁଜଂ ।
ଶଙ୍ଖଚକ୍ରଂ ଗଦାପଦ୍ମଂ ବନମାଳାବିଭୂଷିତଂ । ୪ ।

ଦୃଷ୍ଟ୍ୱାତଂ ଦେବ ଦେବେଶଂ ସ୍ତୋତୁଂ ସମୁପଚକ୍ରମେ । ୫ ।

ଶ୍ରୀନାରଦ ଉବାଚ ।

ନମସ୍ତେ ବାଙ୍ମନୋଽତୀତ ରୂପାୟାନନ୍ତଶକ୍ତୟେ ।
ଆଦିମଧ୍ୟାନ୍ତ ହୀନାୟ ନିର୍ଗୁଣାୟ ଗୁଣାତ୍ମନେ । ୬ ।

ସର୍ବେଷାମାଦିଭୂତାୟ ଭକ୍ତାନାଂ ମାର୍ତ୍ତିନାଶିନେ ।
ଶ୍ରୁତ୍ୱା ସ୍ତୋତ୍ରଂ ତତୋ ବିଷ୍ଣୁଂ ନାରଦଃ ପ୍ରତ୍ୟଭାଷତଃ । ୭ ।

---

ସେଠାରେ ଦେବ ନାରାୟଣ । ଦେଖିଲେ ରୂପ ଶୁକ୍ଳବର୍ଣ୍ଣ ॥
କମ୍ବୁ ରଥାଙ୍ଗ ଗଦା ଅବ୍ଜ । ସୁନ୍ଦର ଧରେ ଚତୁର୍ଭୁଜ ॥
ଗଳାରେ ବନମାଳା ହାର । ବିଶେଷେ ଶୋଭା ମନୋହର । ୪ ।

ବିଷ୍ଣୁଙ୍କ ଏ ରୂପ ଦେଖିଣ । ଆନନ୍ଦ ବ୍ରହ୍ମାଙ୍କ ନନ୍ଦନ ॥
ଅନେକ ମତେ ସ୍ତୁତି କଲେ । ପଦ୍ମ ଚରଣେ ପ୍ରଣମିଲେ । ୫ ।

ନାରଦ ଉବାଚ

ନମସ୍ତେ ଅରୂପ ଅବ୍ୟୟ । ଅନନ୍ତ ଶକ୍ତି ଅନର୍ଣ୍ଣୟ ॥
ଆଦି ମଧ୍ୟାନ୍ତ ଅନ୍ତ ହୀନ । ନିର୍ଗୁଣମୟ ଗୁଣାତ୍ମନ । ୬ ।

ହେ ପରଂବ୍ରହ୍ମ ଆଦିଭୂତ । ପୁରାଣ ପୁରୁଷ ଅବ୍ୟକ୍ତ ॥
ସୃଷ୍ଟି କରତା ନାରାୟଣ । ଭକତ ଆରତ ନାଶନ ॥
ନମସ୍ତେ ବୈକୁଣ୍ଠ ଈଶ୍ୱର । ହେ ଅନ୍ତର୍ଯ୍ୟାମୀ ନିରାକାର ॥
ଏହିଁ ନାରଦ କଲେ ସ୍ତୁତି । ପ୍ରସନ୍ନ ହୋଇଲେ ଶ୍ରୀପତି ॥

ଶ୍ରୀଭଗବାନୁବାଚ ।

କମର୍ଥମାଗତୋଽସି ତ୍ୱଂ କଂ ତେ ମନସି ବର୍ତ୍ତତେ ।
କଥାୟସ୍ୱ ମହାଭାଗ ତତ୍ସର୍ବଂ କଥୟାମିତେଃ । ୮ ।

ଶ୍ରୀ ନାରଦ ଉବାଚ ।

ମର୍ତ୍ତ୍ୟଲୋକେ ଜନାଃ ସର୍ବେ ନାନା ଶୋକ ସମନ୍ୱିତାଃ ।
ନାନା ଯୋନି ସମୁତ୍ପନ୍ନା ପଚ୍ୟନ୍ତେ ପାପକର୍ମଭିଃ । ୯ ।

ତତ୍କଥଂ ସମୟେ ନାଥ ଲଘୂପାୟେନ ତଦ୍ଭବ ।
ଶ୍ରୋତୁମିଚ୍ଛାମି ତତ୍ସର୍ବଂ କୃପାସ୍ତି ଯଦି ତେ ମୟି ୧୦ ।

---

ଶ୍ରୀ ଭଗବାନୁବାଚ

ହେ ମୁନିବର କିସ ଅର୍ଥେ । ବିଜୟ କଲେ ମୋ ଅଗ୍ରତେ ॥
ଆପଣା ମନେ କି ବାଞ୍ଛିତ । ସେ କଥା କରନ୍ତୁ ବ୍ୟକତ ॥
ସେ ସବୁ ତୁମ୍ଭର ଆଗର । କହିବି ଆହେ ମୁନିବର । ୮ ।

ଶ୍ରୀ ନାରଦ ଉବାଚ ।

ଏହନ୍ତେ ବିଷ୍ଣୁଙ୍କ ବାକ୍ୟରେ । ନାରଦ କହନ୍ତି ସଧୀରେ ॥
ମର୍ତ୍ତ୍ୟରେ ଜନେ ଶୋକେ ପଡ଼ି । ଭୋଗୁ ଅଛନ୍ତି ଦୁଃଖେ ବୁଡ଼ି ॥
ନାନା ଯୋନିରେ ହୋଇ ଜନ୍ମ । ପାପରେ ହୋଇଛନ୍ତି ମଗ୍ନ । ୯ ।

ଅଳପ ଉପାୟ କରଣ । ଯେମନ୍ତେ ହେବେ ପରିତ୍ରାଣ ॥
ମୋଠାରେ ଯେବେ ତୁମ୍ଭ ଦୟା । କହନ୍ତୁ ଆହେ ଚକ୍ରଧାରୀ ॥
ସେ କଥା ଶୁଣିବାକୁ ଇଚ୍ଛା । ପୁରଅ ମୋର ମନବାଞ୍ଛା । ୧୦ ।

ଶ୍ରୀ ଭଗବାନୁବାଚ ।

ସାଧୁପୃଷ୍ଟଂ ତ୍ୱୟାବତ୍ସ ଲୋକାନୁଗ୍ରହ ବାଞ୍ଛୟା ।
ଯତ୍କୃତ୍ୱା ମୁଚ୍ୟତେ ମୋହାତ୍ତଚ୍ଛୃଣୁଷ୍ୱ ବଦାମିତେ । ୧୧ ।

ବ୍ରତମସ୍ତି ମହାପୁଣ୍ୟଂ ସ୍ୱର୍ଗେ ଭୁବି ଚ ଦୁର୍ଲଭଂ ।
ତବ ସ୍ନେହାନ୍ ମୟା ବତ୍ସ ପ୍ରକାଶଂ କ୍ରିୟତେଽଧୁନା । ୧୨ ।

ସତ୍ୟନାରାୟଣଂ ସୈ୍ୟକଂ ଦ୍ରତଂ ସମ୍ୟଗ୍ ବିଧାନତଃ ।
କୃତ୍ୱା ସଦ୍ୟଃ ସୁଖଂ ଭୁକ୍ତ୍ୱା ପରତ୍ର ମୋକ୍ଷ ମାପ୍ନୁୟାତ୍ ।
ତଚ୍ଛ୍ରୁତ୍ୱା ଭଗବଦ୍ ବାକ୍ୟଂ ନାରଦ ମୁନିରବ୍ରବୀତ୍ । ୧୩ ।

---

ଶ୍ରୀ ଭଗବାନ ଉବାଚ ।

ନାରଦ ବାକ୍ୟେ ଭଗବାନ । କହନ୍ତି ହୋଇ ସୁପ୍ରସନ୍ନ ॥
ଆହେ ନାରଦ ତପୋଧନ । ତୁମ୍ଭେ ଯେ ସାଧୁ ମଧ୍ୟେ ଗଣ୍ୟ ॥
ପ୍ରାଣୀଙ୍କ ପରମ ମଙ୍ଗଳ । ଆପଣା ମନରେ ବାଞ୍ଛିଲ ॥
ସୁକର୍ମ କଲେ ଯେ ମାନବେ । ପାପରୁ ମୁକତି ଲଭିବେ । ୧୧ ।

ମହା ପବିତ୍ର ଏକ ବତ । ପୁରାଣେ ହୋଇଛି ଉକତ
ସେ ବ୍ରତ ସ୍ୱର୍ଗ ମର୍ତ୍ତ୍ୟେ ଜାଣ । ଦୁର୍ଲ୍ଲଭ ଅଟଇଟି ପୁଣ ॥
ତାହା ମୁଁ ତୁମ୍ଭଙ୍କୁ ସ୍ନେହରେ । କହୁଛି ଶୁଣ ମନସ୍ଥିରେ । ୧୨ ।

ଶ୍ରୀ ସତ୍ୟ ନାରାୟଣ ବ୍ରତ । ଯେ କରେ ହୋଇ ଭକ୍ତି ଯୁକ୍ତ ॥
ରୋଗ ଶୋକାଦି ନାଶ ଯାଇ । ଅନ୍ତେ ସେ ସୁଗତି ଲଭଇ ॥
ଏପରି ଅଟେ ସତ୍ୟ ବ୍ରତ । କହିଲ ଆହେ ତପୋବନ୍ତ ॥
ବିଷ୍ଣୁଙ୍କ ବାକ୍ୟ ଶୁଣି ମୁନି । ପୁଣି ପୁଛନ୍ତି ଚିତ୍ତେ ଗୁଣି । ୧୩ ।

ଶ୍ରୀ ନାରଦ ଉବାଚ ।

କିଂ ଫଳଂ କିଂ ବିଧାନଂ ଚ କୃତଂ କେନ ଚ ତଦ୍‌ବ୍ରତଂ ।
ତତ୍ସର୍ବଂ ବିସ୍ତରାଦ୍ ବ୍ରୂହି କଦା କାର୍ଯ୍ୟଂ ହି ତଦ୍‌ବ୍ରତଂ ।୧୪।

ଶ୍ରୀଭଗବାନ ଉବାଚ ।

ଦୁଃଖଶୋକାଦିଶମନଂ ଧନଧାନ୍ୟବିବର୍ଦ୍ଧନଂ ।
ସୌଭାଗ୍ୟସନ୍ତତିକର ସର୍ବତ୍ରବିଜୟପ୍ରଦଂ ।୧୫।
ଯସ୍ମିନ୍ କସ୍ମିନ୍ ଦିନେ ମର୍ତ୍ତ୍ୟୋ ଭକ୍ତିଶ୍ରଦ୍ଧାସମନ୍ୱିତଃ
ସତ୍ୟ ନାରାୟଣଂ ଦେବଂ ଯଜେ ଚୈବ ନିଶାମୁଖେ ।୧୬।
ବାନ୍ଧବେ ବ୍ରାହ୍ମଣେ ଚୈବ ସହିତୋ ଧର୍ମ ତତ୍ପରଃ ।
ନୈବେଦ୍ୟଂ ଭକ୍ତିତୋ ଦଦ୍ୟାତ୍ପ୍ରସାଦଂ ଭକ୍ଷମୁତ୍ତମଂ ।୧୭।

---

ଶ୍ରୀ ନାରଦ ଉବାଚ ।

ଯେ ବ୍ରତ ବିଧାନ କପରି । କହନ୍ତୁ ବେଗେ ଆହେ ହରି ॥
ପୂର୍ବରେ ସେ ବ୍ରତ କେ କଲା । ପୂଜଣେ କି ଫଳ ପାଇଲା ॥
କେବଣ ଦିନେ ଏହୁ ବ୍ରତ । ପାଳନ୍ତି ଆହେ ଲକ୍ଷ୍ମୀକାନ୍ତ ॥
ଏ ସବୁ ବିସ୍ତରି ମୋ ଆଗେ । ଜଣାଏ କହ ଅନୁରାଗେ ।୧୪।

ଭଗବାନ ଉବାଚ ।

କହନ୍ତି ଦେବ ଭଗବାନ । ନାରଦ ଏକମନେ ଶୁଣ ॥
ଦୁଃଖ ଶୋକାଦି ସର୍ବନାଶ । ସମ୍ପଦ ବଢ଼ଇ ଅଶେଷ ॥
ସୁଗୁଣ ସନ୍ତାନ ଦିଅଇ । ସୌଭାଗ୍ୟ ବୃଦ୍ଧି ଜୟ ହୋଇ ।୧୫।
ଯେ ଦିନ କରିବ ଏ ବ୍ରତ । ଶ୍ରଦ୍ଧା ଭକ୍ତିରେ ହୋଇ ଯୁକ୍ତ ॥
ସନ୍ଧ୍ୟା ସମୟେ ସତ୍ୟପୀର । ପୂଜିବ ହରଷ ମନର ॥
ବିପ୍ର ବାନ୍ଧବଙ୍କୁ ଡ଼ାକାଇ । ଧର୍ମରେ ପରାୟଣ ହୋଇ ॥
ପ୍ରସାଦ ନେଇ ଭକ୍ତି ଚିତ୍ତେ । ଅର୍ପିବ ସତ୍ୟଦେବାଗ୍ରତେ ।୧୬।

ରମ୍ଭାଫଳଂ ଘୃତଂ କ୍ଷୀରଂ ଗୋଧୂମସ୍ୟ ଚ ଚୂର୍ଣ୍ଣକଂ ।
ଅଭାବେ ଶାଳି ଚୂର୍ଣ୍ଣଂ ବା ଶର୍କରା ବା ଗୁଡ଼ା ତଥା । ୧୮ ।

ଏଳା ଲବଙ୍ଗ କର୍ପୂରଂ ମଞ୍ଚଗନ୍ଧ ସମନ୍ୱିତେ ।
ସପାଦଂ ସର୍ବ ଭକ୍ଷ୍ୟାଣି ଏକୀକୃତ୍ୟ ନିବେଦୟେତ୍ । ୧୯ ।

ବିପ୍ରାୟ ଦକ୍ଷିଣାଂ ଦଦ୍ୟାତ୍କଥାଂ ଶ୍ରୁତ୍ୱା ଜନୈଃ ସହ ।
ତତଶ୍ଚ ବନ୍ଧୁଭିଃ ସାର୍ଦ୍ଧଂ ବିପ୍ରେଭ୍ୟଃ ପ୍ରତିପାଦୟେତ୍ । ୨୦ ।

ପ୍ରସାଦଂ ଭକ୍ଷୟେଦ୍ ଭକ୍ତ୍ୟା ନୃତ୍ୟବାଦ୍ୟାଦିକଂ ଚରେତ୍ ।
ତତସ୍ତୁ ସ୍ୱଗୃହଂ ଗଚ୍ଛେତ୍ ସତ୍ୟନାରାୟଣଂ ସ୍ମରନ୍ । ୨୧ ।

---

ରମ୍ଭା ଫଳାଦି ଦୁଗ୍ଧ ଘୃତ । ଗୋଧୂମ ଚୂର୍ଣ୍ଣ ଯେ ନବାତ ॥
ଗହମ ଅଭାବ ହୋଇଲେ । ତାହାର ପରିବର୍ତ୍ତେ ଭଲେ ॥
ଷାଠି ତଣ୍ଡୁଳ ଚୁଲେ ଗୁଡ଼ । ଏ ସର୍ବ କରିବ ଯୋଗାଡ଼ । ୧୮ ।

ଗୋଲମରିଚ ଜାଇଫଳ । ଲବଙ୍ଗ ଅଳାଇଚ ଭଲ ॥
କର୍ପୂର ସଙ୍ଗତେ ଘେନଣ । ପୂଜାର ସାମଗ୍ରୀ କରଣ ॥
ଏକତ୍ରେ ପ୍ରସାଦ ଥୋଇଣ । ଅର୍ପିବ ସତ୍ୟ ନାରାୟଣ । ୧୯ ।

ବିପ୍ରଙ୍କ ମୁଖୁଁ କଥା ରସ । ଶୁଣିବ ହୋଇଣ ହରଷ ॥
କଥା ଶୁଣିଣ ତୋଷ ମନେ । ଦକ୍ଷିଣା ଦେବ ବିପ୍ରଜନେ । ୨୦ ।

ବିପ୍ର ସଙ୍ଗତେ ବନ୍ଧୁଗଣ । ଭୋଜନେ ତୃପ୍ତି ଅକାରଣ ॥
ପ୍ରସାଦ ନୈବେଦ୍ୟ କରିବ । ଆନନ୍ଦ ମନରେ ଭକ୍ଷିବ ॥
ତଦନ୍ତେ ନୃତ୍ୟ ଗୀତ କରି । ଗୃହେ ଚଳିବ ପ୍ରଭୁ ସ୍ମରି । ୨୧ ।

ଏବଂ କୃତ୍ୱା ମନୁଷ୍ୟାଣାଂ ବାଞ୍ଛାସିଦ୍ଧିର୍ଭବେଦ୍ଧ୍ରୁବଂ ।
ବିଶେଷତଃ କଳିଯୁଗେ ନାନ୍ୟୋପାୟୋଽସ୍ତି ଭୂତଳେ । ୨୨ ।

ପୂର୍ବଜନ୍ମ କିବ୍ରତଂସ୍ୟାତ୍ତ୍ୱ ସର୍ବ ସମ୍ପତ୍ ମବାପ୍ନୁୟାତ୍ ।
କଥା ମହ୍ୟ ପ୍ରବକ୍ଷ୍ୟାମି କୃତଂ ଯେନ ପୁରାମୁନେ । ୨୩ ।

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ ବ୍ରତ ପୂଜା
କଥାୟାଂ ଶ୍ରୀ ନାରଦଋଷି ଶ୍ରୀ ଭଗବତୋଃ ବ୍ରତ
କଥୋପକଥନଂ ନାମ ଦ୍ୱିତୀୟୋଽଧ୍ୟାୟଃ ।

---

ଏପରି ସତ୍ୟ ବ୍ରତ କଲେ । ମନୁଷ୍ୟ ସୁଖ ପାଏ ଭଲେ ॥
ସର୍ବ କାମନା ସିଦ୍ଧି ହୁଏ । ନାନାବିଧ ପାପ ମାନ ଦହେ ॥
ବିଶେଷ କଳିଯୁଗେ ଜାଣ । ଏ ବ୍ରତ ଅଟଇ ସୁପୁଣ୍ୟ ॥
ଅଳପ ଉପାୟରେ ଫଳ । କଲେ ସେ ମିଳଇ ତତ୍କାଳ ।୨୨।

ପୂର୍ବେ ଏ ବ୍ରତ ଯେହୁ କଲା । ବିପୁଳ ସମ୍ପତ୍ତି ଭୋଗିଲା ॥
ତାହା କହିବା ତୁମ୍ଭ ପାଶ । ଶୁଣ ସୁମନେ ଋଷିଈଶ । ୨୩ ।

ସୁଜନେ ବୋଲ ହରି ହରି । ନାନା ବିପଦୁଁ ହେବ ପାରି ॥
ଶ୍ରୀ ସତ୍ୟ ନାରାୟଣ ବ୍ରତ । ଦ୍ୱିତୀୟ ଅଧ୍ୟା ସମାପତ ॥
କହେ ମେହେର ନାରାୟଣ । ଭରସା ସତ୍ୟ ନାରାୟଣ ॥

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ସତ୍ୟନାରାୟଣବ୍ରତ ପୂଜା
କଥାୟାଂ ଶ୍ରୀ ନାରଦଋଷି ଶ୍ରୀ ଭଗବତୋ ବ୍ରତ
କଥୋପକଥନଂ ନାମ ଦ୍ୱିତୀୟୋଽଧ୍ୟାୟ



## ତୃତୀୟ ଅଧ୍ୟାୟ ।

### ଅଥ ଶ୍ରୀ ସତାନନ୍ଦ ବ୍ରାହ୍ମଣ ଉପାଖ୍ୟାନ ।

ଶ୍ରୀ ସୂତ ଉବାଚ ।

କଶ୍ଚିତ କାଶୀପୁରେ ଗ୍ରାମେ ଆସୀଦ୍ ବିପ୍ରୋଽତି ନିର୍ଦ୍ଧନଂ
କ୍ଷୁଧା ତୃଷ୍ଣାକୁଳୋ ଭୂତ୍ୱା ନିତ୍ୟଂ ବଭ୍ରାମ ଭୂତଳେ । ୧ ।
ଦୁଃଖିତଂ ବ୍ରାହ୍ମଣଂ ଦୃଷ୍ଟ୍ୱା ଭଗବାନ୍ ବ୍ରାହ୍ମଣ ପ୍ରିୟଃ ।
ବୃଦ୍ଧ ବ୍ରାହ୍ମଣ ରୂପେଣ ପପ୍ରଚ୍ଛ ଦ୍ୱିଜମାଦରତ୍ । ୨ ।
କିମର୍ଥଂ ଭ୍ରମସେ ବିପ୍ରଂ ମହୀଂ ନିତ୍ୟଂ ସୁ ଦୁଃଖିତଃ ।
ତତ୍ସର୍ବଂ ଶ୍ରୋତୁମିଚ୍ଛାମି କଥ୍ୟତାଂ ଦ୍ୱିଜ ଉତ୍ତମ । ୫ ।

---

## ତୃତୀୟ ଅଧ୍ୟାୟ

### ଶ୍ରୀ ସତାନନ୍ଦ ବ୍ରାହ୍ମଣ ଉପାଖ୍ୟାନ ।

ଶ୍ରୀ ସୂତ ଉବାଚ

କହନ୍ତି ସୂତ ମହାମୁନି । ଶୁଣ ଶୌନକ ମହାଜ୍ଞାନୀ
ପୂର୍ବେ ଯେ କାଶୀପୁର ଗ୍ରାମେ । ଥିଲେ ଦରିଦ୍ର ବିପ୍ର ଜଣେ ॥
ନାମ ତାହାର ସତାନନ୍ଦ । ବେଦ ବିଦ୍ୟାରେ ସେ କୋବିଦ ॥
କ୍ଷୁଧା ପିପାସା ବ୍ୟାକୁଳରେ । ଭ୍ରମଇ ଅବନୀ ମଧ୍ୟରେ ॥
ତାହାର କଷଣ ଦେଖିଣ । ବ୍ରାହ୍ମଣ ପ୍ରିୟ ଭଗବାନ ॥
ବୃଦ୍ଧବ୍ରାହ୍ମଣ ରୂପ ହେଲେ । ବିପ୍ରକୁ ସଧୀରେ ପୁଚ୍ଛିଲେ ॥

ବୃଦ୍ଧ ବ୍ରାହ୍ମଣ ଉବାଚ ।

ହେ ବିପ୍ରବର ଦୁଃଖିତରେ । କାହିଁକି ଭ୍ରମୁଛ ସଂସାରେ ॥
ତାହା ମୋ ଆଗରେ ଆପଣ । ସମସ୍ତ କହନ୍ତୁ ବହନ । ୩ ।

ଶତାନନ୍ଦବିପ୍ର ଉବାଚ ।

ବ୍ରାହ୍ମଣୋଽତି ଦରିଦ୍ରୋଽହଂ ଭିକ୍ଷାର୍ଥଂ ଚ ଭ୍ରମେନ୍ମହୀଂ ।
ଉପାୟଂ ଯଦି ଜାନାସି କୃପୟା କଥୟ ପ୍ରଭୋଃ । ୪ ।

ବିପ୍ରରୂପୀ ଭଗବାନ୍ ଉବାଚ ।

ସତ୍ୟ ନାରାୟଣଂ ବିଷ୍ଣୁ ବାଞ୍ଛିତାର୍ଥଂ ଫଳପ୍ରଦଂ
ତସ୍ୟ ତ୍ୱଂ ପୂଜନଂ ବିପ୍ର କୁରୁଷ୍ୱ ବ୍ରତମୁତ୍ତମଂ । ୫ ।
ଯତ୍କୃତ୍ୱା ସର୍ବଦୁଃଖେଭ୍ୟୋ ମୁକ୍ତୋ ଭବତି ମାନବଃ ।
ବିଧାନଂ ଚ ବ୍ରତସ୍ୟାପି ବିପ୍ରାୟ ଭାଷେୟ ଯତ୍ନତଃ । ୬ ।

---

ଶତାନନ୍ଦ ଉବାଚ ।

ଶୁଣିଣ ପ୍ରଭୁଙ୍କ ବଚନ । ବିନୟେ କହଇ ବ୍ରାହ୍ମଣ ॥
ମୁଁ ଅତି ଦରିଦ୍ର ବ୍ରାହ୍ମଣ । ଭିକ୍ଷା ମାଗିଣ ନିଏ ଦିନ ॥
ଦରିଦ୍ର ଅବସ୍ଥା ମୋହର । କେମନ୍ତେ ହୋଇବଟି ଦୂର ॥
ଆପଣ କିଛିହିଁ ଉପାୟ । ଜାଣନ୍ତି ଯେବେ ମହାଶୟ ॥
କୃପାବହିଣ ମୋ ଆଗର । ଜଣାଏଁ କହ ତତପର । ୪ ।

ବିପ୍ରରୂପୀ ଭଗବାନ ଉବାଚ

ତା ଶୁଣି ବିପ୍ରରୂପୀ ହରି । କହନ୍ତି ଦ୍ୱିଜଙ୍କୁ ବିସ୍ତାରି
ହେ ବିପ୍ର ମନ ଦେଇ ଶୁଣ । ପୂଜ ତୁ ସତ୍ୟନାରାୟଣ ॥
ଯେ ସତ୍ୟନାରାୟଣ ପ୍ରଭୁ । ମନ-ବାଞ୍ଛିତ ଦାତା ବିଭୁ ॥
ଆନନ୍ଦେ ତାଙ୍କୁ ପୂଜାକର । ଭୋଗିବୁ ସମ୍ପଦ ଅପାର । ୫ ।
ଯାହାଙ୍କ କୃପାରୁ ଅଶେଷ । ଦୁଃଖ ଯେ ହୁଅଇ ବିନାଶ ॥
ଆବର ମୁକ୍ତ ପାଏ ଜନ । ବହୁ ସୁଖରେ ନିଏ ଦିନ ॥
ତହୁଁ ସେ ବୃଦ୍ଧ ବିପ୍ରବର । ସେ ଶତାନନ୍ଦର ଆଗର ॥
ଶ୍ରୀ ସତ୍ୟନାରାୟଣ ବ୍ରତ । ବିଧାନେ କହିଲେ ସମସ୍ତ । ୬ ।

ସତ୍ୟନାରାୟଣୋ ବୃଦ୍ଧ ସ୍ତବୈବାନ୍ତର ଧୀୟତ ।
ତତଃ ପ୍ରାତ କରିଷ୍ୟାମି ବ୍ରତଂ ମନସି ନିଶ୍ଚିତଂ । ୭ ।
ଇତି ସଂଚିନ୍ତ୍ୟ ବିପ୍ରୋଽସୌ ରାତ୍ରୌ ନିଦ୍ରା ନ ଲବ୍‌ଧବାନ୍ ।
ତତଃ ପ୍ରାତଃ ସମୁତ୍‌ଥାୟ ସତ୍ୟନାରାୟଣବ୍ରତଂ । ୮ ।
କରିଷ୍ୟ ଇତି ସଂକଳ୍ପ ଭିକ୍ଷାର୍ଥଂ ମଗମଦ୍ଦ୍ୱିଜଃ ।
ତସ୍ମିନ୍ନେବ ଦିନେ ବିପ୍ରଃ ପ୍ରଚୁରଂ ଦ୍ରବ୍ୟ ପ୍ରାପ୍ତବାନ୍ । ୯ ।
ତେନୈବ ବନ୍ଧୁଭିଃ ସାର୍ଦ୍ଧଂ ସତ୍ୟସ୍ୟ ବ୍ରତମାଚରନ୍ ।
ସର୍ବଦୁଃଖ ବିନିର୍ମୁକ୍ତଃ ସର୍ବ ସମ୍ପତ୍‌ସମନ୍ୱିତଃ । ୧୦ ।

---

ସେଠାରୁଁ ସତ୍ୟନାରାୟଣ । ଅନ୍ତର ହୋଇଲେ ବହନ ॥
ଯହୁଁ ସେ ବିପ୍ର ସତାନନ୍ଦ । ବ୍ରତକୁ ଶୁଣିଣ ଆନନ୍ଦ ॥
ଯେ ବ୍ରତ ବୃଦ୍ଧ ବିପ୍ରବର । କହିଲେ ମୋହର ଆଗର ॥
ପ୍ରଭାତ ହେଲେ ସତ୍ୟବ୍ରତ । ନିଶ୍ଚୟ କରିବି ମୁଁ ସତ୍ୟ । ୭ ।
ସେ ସ୍ଥାନୁଁ ତହୁଁ ଦ୍ୱିଜବର । ମିଳିଲା ଆପଣା ମନ୍ଦିର ॥
ବସିଣ ନିଶ୍ଚିନ୍ତ ଆସନେ । ଭାବିଲା ଆପଣାର ମନେ ॥
ରାତିରେ ନିଦ୍ରା ନ ଆସିଲା । ଅନନ୍ଦେ ରାତି ପାହିଗଲା ॥
ପ୍ରଭାତୁ ଉଠିଣ ବ୍ରାହ୍ମଣ । ଚିନ୍ତିଣ ସତ୍ୟ ନାରାୟଣ । ୮ ।
ସଂକଳ୍ପ କରିଣ ମନରେ । ପ୍ରଭୁଙ୍କ ବ୍ରତ କରିବାରେ ॥
ଭିକ୍ଷାର୍ଥେ କରିଲା ଗମନ । ଗ୍ରାମରେ ମାଗିଲା ଯାଇଣ ॥
ସେ ଦିନ ବହୁତ ପଦାର୍ଥ । ପାଇଣ ହେଲା ତୋଷ ଚିତ୍ତ । ୯ ।
ସେ ଭିକ୍ଷା ଘେନିଣ ବ୍ରାହ୍ମଣ । ପ୍ରବେଶି ଆପଣା ସଦନ ॥
ବନ୍ଧୁ ବର୍ଗହିଁ ନିମନ୍ତ୍ରିଲା । ହରଷେ ସତ୍ୟପୂଜା କଲା ॥
ସକଳ ଦୁଃଖୁଁ ସେ ତରିଲା । ସର୍ବ ସମ୍ପଦେ ଯୁକ୍ତ ହେଲା । ୧୦ ।

ବଭୂବ ସାର୍ଦ୍ଧିଜ ଶ୍ରେଷ୍ଠୋ ବ୍ରତମସ୍ୟ ପ୍ରସାଦତଃ ।
ତତଃ ପ୍ରଭୃତ କାଳଂ ଚ ମାସି ମାସି ବ୍ରତଂ କୃତଂ । ୧୧ ।

ଶ୍ରୀ ଭଗବାନୁବାଚ ।

ଏବଂ ନାରାୟଣଂ ସେ୍ୟଦଂ ବ୍ରତଂ ଜ୍ଞାତ୍ୱା ଦ୍ୱିଜୋତ୍ତମଃ ।
ସତାନନ୍ଦ ବ୍ରାହ୍ମଣୋଽସୌ ସକୁଟୁମ୍ବସ୍ତ ପୂଜନାତ୍ । ୧୨ ।
ସର୍ବପାପ ବିନର୍ମୁକ୍ତୋ ଦୁର୍ଲ୍ଲଭଂ ମୋକ୍ଷ ପ୍ରାପ୍ତବାନ୍ ।
ବ୍ରତମେତଦ୍ ଯଦା ବିପ୍ରଂ ପୃଥିବ୍ୟା ସଚରିଷ୍ୟନ୍ତି । ୧୩ ।
ତଦୈବ ସର୍ବଦୁଃଖଂ ଚ ମନୁଷ୍ୟସ୍ୟ ବିନଶ୍ୟତି ।
ଏବଂ ନାରାୟଣେନୋକ୍ତଂ ନାରଦାୟ ମହାତ୍ମନେ । ୧୪ ।

---

ଶ୍ରୀ ସତ୍ୟଦେବଙ୍କ କୃପାରେ । ବ୍ରାହ୍ମଣ ଦୁଃଖ ଗଲା ଦୂରେ ॥
ସେ ଦିନୁଁ ପ୍ରତିମାସେ ଥରେ । ପୂଜନ କଲା ସତ୍ୟପୀରେ ॥
ସେ ବ୍ରତ ଫଳେ ଦ୍ୱିଜବର । ଶ୍ରେଷ୍ଠ ହୋଇଲା ଜଗତର । ୧୧ ।

ଶ୍ରୀ ଭଗବାନୁବାଚ

କହନ୍ତି ଦେବ ନାରାୟଣ । ଶୁଣ ନାରଦ ଦେଇ ମନ ॥
ଶ୍ରୀ ସତ୍ୟନାରାୟଣ ପୂଜା । କରନ୍ତେ ସତାନନ୍ଦ ଦ୍ୱିଜା ॥
ସ୍ୱଗୃହ କୁଟୁମ୍ବ ଭୁଲେଣ । ବହୁ ସୁଖରେ ନେଲା ଦିନ । ୧୨ ।
ସର୍ବପାପରୁ ମୁକ୍ତ ହେଲା । ଦୁର୍ଲ୍ଲଭ ଗତି ସେ ଲଭିଲା ॥
ସେ ବିପ୍ରଠାରୁ ସତ୍ୟ ବ୍ରତ । ଜଗତେ ହୋଇଲା ବିଖ୍ୟାତ । ୧୩ ।
ସେ ବ୍ରତ ଫଳେ ମାନବର । ସକଳ ଦୁଃଖ ହେଲା ଦୂର ॥
ଆହେ ଶୌନକ ତପୋଧନ । କହିଲି ଏ ବ୍ରତ ବିଧାନ ॥
ପୂର୍ବେ ନାରଦେ ନାରାୟଣ । ଏ ବ୍ରତ କହିଥିଲେ ଜାଣ । ୧୪ ।

୫

ମୟାପି କଥିତଂ ବିପ୍ର କିମନ୍ୟଂ କଥୟାମିବଃ । ୧୫ ।

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ ବ୍ରତ-
ପୂଜାକଥାୟାଂ ଶ୍ରୀ ସତାନନ୍ଦ ବ୍ରାହ୍ମଣ ଉପାଖ୍ୟାନେ
ନାମୋ ତୃତୀୟୋଽଧ୍ୟାୟଃ ।

— ✳ —

---

ସେ ଋଷି ମୁଖୁଁ ମୁହିଁ ଶୁଣି । ଥିବାରୁ କହିଲି ହେ ମୁନି ॥
ଆଉ କି ଶୁଣିବାକୁ ମନ । କହନ୍ତୁ ଆହେ ମୁନିଗଣ । ୧୫ ।

ଶ୍ରୀ ସତାନନ୍ଦ ଉପାଖ୍ୟାନ । ତୃତୀୟ ଅଧ୍ୟା ସମାପନ ॥
ଶୁଣି ସୁଜନେ ଭଜ ହରି । ନାନା ବିପଦୁଁ ହେବ ପାରି ॥
କହଇ ମନୋହର ସୂତ । ବାଞ୍ଛା କରିବେ ଦେବ ସତ୍ୟ ॥
ସେ ସତ୍ୟଦେବ ପାଦଧ୍ୟାୟି । ମେଦେହେର ନାରାୟଣ କହି । ୦ ।

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ
ବ୍ରତପୂଜାକଥାୟାଂ ଶ୍ରୀ ସତାନନ୍ଦ ବ୍ରାହ୍ମଣ ଉପାଖ୍ୟାନେ
ନାମ ତୃତୀୟୋଽଧ୍ୟାୟଃ ।



# ଚତୁର୍ଥ ଅଧ୍ୟାୟ
## ଅଥ କାଷ୍ଠବିକ୍ରେତା ଉପାଖ୍ୟାନଂ

ଶ୍ରୀ ଶୌନକ ଉବାଚ ।

ତତୋ ବିପ୍ରାଦ୍‌ବ୍ରତଂ କେନ ପୃଥିବ୍ୟାଂ ଚରିତ ମୁନେ ।
ତତ୍ସର୍ବଂ ଶ୍ରୋତୁ ମିଚ୍ଛାମି ଶ୍ରଦ୍ଧାସ୍ମାକଂ ପ୍ରଜାୟତେ । ୧ ।

ଶ୍ରୀ ସୂତ ଉବାଚ

ଶୃଣୁଧ୍ୱ ମୁନୟେ ସର୍ବେ ତସ୍ମାଦ୍‌ଯେନଂ କୃତଂ ଭୁବି ।
ଏକଦା ସ ଦ୍ୱିଜବରୋ ନିଜ ବିତ୍ତାନୁସାରତଃ ।
ବନ୍ଧୁଭିଃ ସ୍ୱଜନୈ ସାର୍ଦ୍ଧଂ ବ୍ରତଂ କର୍ତ୍ତୁଂ ସମୁଦ୍ୟତଃ ।
ଏତସ୍ମିନ୍ନେବ କାଳେ ତୁ କାଷ୍ଠକ୍ରେତା ସମାଗତଃ । ୩ ।

---

# ଚତୁର୍ଥ ଅଧ୍ୟାୟ
## କାଷ୍ଠବିକ୍ରେତା ଉପାଖ୍ୟାନ

ଶ୍ରୀ ଶୌନକ ଉବାଚ

ଶୁଣି ଶୌନକ ମୁନିମାନେ । ପୁଚ୍ଛନ୍ତି ପୁଣି ହର୍ଷ ମନେ ॥
ହେ ସୂତ ସୁଦୟା ବିହ୍ୱଣ । କହନ୍ତୁ ବ୍ରତର ବିଧାନ
ପୂର୍ବେ ଯେ ସତାନନ୍ଦ ଦ୍ୱିଜା । କରିଣ ଥିଲେ ସତ୍ୟପୂଜା ॥
ସେ ବିପ୍ରଠାରୁ ସତ୍ୟବ୍ରତ । ଜଗତେ କେ କଲା ବିଖ୍ୟାତ ॥
ସେ ସର୍ବ ଆମ୍ଭର ଆଗର । କହନ୍ତୁ ଆହେ ମୁନିବର । ୧ ।

ଶ୍ରୀ ସୂତ ଉବାଚ

ଶୌନକ ମୁନିଙ୍କ ବାକ୍ୟରେ । କହନ୍ତି ସୂତ ଭକ୍ତିଭରେ ॥
ଶୁଣ ସକଳ ମୁନିମାନେ । ଶ୍ରୀ ସତ୍ୟବ୍ରତ ଏକମନେ ॥ ॥
ଏକଦା ସେହି ବିପ୍ରବର । ନିଜର ଯେମନ୍ତ ସମ୍ଭାର । ୨ ।
ବନ୍ଧୁ ସ୍ୱଜନଙ୍କୁ ଡାକିଣ । ପୂଜଇ ସତ୍ୟ ନାରାୟଣ ॥
ଏମନ୍ତ ବେଳେ ତାର ଦ୍ୱାରେ । କାଷ୍ଠବିକ୍ରେତା ଆସି ମିଳେ ॥

ବହିଃ କାଷ୍ଠଂ ଚ ସଂସ୍ଥାପ୍ୟ ବିପ୍ରସ୍ୟ ଗୃହମାଯଯୌ ।
ତୃଷ୍ଣୟା ପୀଡ଼ିତ ଆତ୍ମା ଦୃଷ୍ଟ୍ୱା ବିପ୍ରଂ କୃତଂ ବ୍ରତଂ । ୪ ।
ପ୍ରଣିପତ୍ୟ ଦ୍ୱିଜଂ ସାହ କିମିଦଂ କ୍ରିୟତେ ତ୍ୱୟା ।
କୃତେ କିଂ ଫଳମାପ୍ନୋତି ବିଧିଃ କଥୟସ୍ୱମେ ପ୍ରଭୋଃ । ୫ ।

ବିପ୍ର ଉବାଚ ।

ସତ୍ୟନାରାୟଣ ସ୍ୟେଦଂ ବ୍ରତ ସର୍ବେପ୍ସିତପ୍ରଦଂ ।
ଦୁଃଖଶୋକାଦିଶମନଂ ସର୍ବତ୍ର ବିଜୟପ୍ରଦଂ । ୬ ।
ଯସ୍ୟ ପ୍ରସାଦାନ୍ମେ ସର୍ବଂ ଧନ ଧାନ୍ୟାଦିକଂ ମହତ୍ ।
ତତସ୍ତୁ ତଦ୍‌ବ୍ରତଂ ଶ୍ରୁତ୍ୱା କାଷ୍ଠକ୍ରେତାତିହର୍ଷିତଃ । ୭ ।

---

କାଷ୍ଠ ବିଡ଼ାକୁ ଦ୍ୱାରେ ଥୋଇ । ବିପ୍ର ଗୃହରେ ହେଲା ଯାଇ ॥
ତୃଷାରେ ବ୍ୟାକୁଳ ଜୀବନ । ଦେଖିଲା ପୂଜାର ବିଧାନ ॥
ସାଷ୍ଟାଙ୍ଗେ ନମସ୍କାର କଲା । ବିପ୍ରକୁ ସଧୀରେ ପୁଚ୍ଛିଲା ॥
କି ପୂଜା କରୁଛ ଗୋସାଇଁ । କହନ୍ତୁ ମୋ ଆଗେ ବୁଝାଇ ॥
ଏପରି କଲେ କି କି ଫଳ । ମିଳଇ କହ ତା ସକଳ । ୫ ।

ବିପ୍ର ଉବାଚ

କାଷ୍ଠ ବିକ୍ରେତା ବାଣୀ ଶୁଣି । ହରଷେ କହେ ଦ୍ୱିଜମଣି ॥
ଶ୍ରୀ ସତ୍ୟନାରାୟଣ ବ୍ରତ । କହୁଛି ଶୁଣ ଦେଇ ଚିତ୍ତ ॥
ଦୁଃଖ ଶୋକାଦି ଭୟ ନାଶ । ସୁପୁଣ୍ୟ ହୁଅଇ ଅଶେଷ । ୬ ।
ଯାହାଙ୍କ ପ୍ରସାଦରୁ ମୁହିଁ । ଧନ ସମ୍ପତ୍ତି ପାଇଲଇଁ ॥
ଦ୍ୱିଜ ମୁଖରୁ ବ୍ରତ କଥା । ଶୁଣିଣ ସେ କାଷ୍ଠ ବିକ୍ରେତା ॥
ସେ ସତ୍ୟଦେବ ପୂଜା ବ୍ରତ । ଶୁଣିଣ ହେଲା ହରଷିତ । ୭ ।

ପୀତ୍ୱା ଜଳଂ ପ୍ରସାଦଂ ଚ ଭୁକ୍ତ୍ୱା ତନ୍ନଗରଂ ଯଯୌ ।
ସତ୍ୟ ନାରାୟଣଂ ଦେବଂ ଚିନ୍ତୟନ୍ ସ୍ଥିର ମାନସଃ । ୮ ।
କାଷ୍ଠବନ୍ଧେଯ୍ଟତୋ ଗ୍ରାମେ ପ୍ରାପ୍ୟତେ ଗୃଦ୍ୟଂଯଦ୍ଧନଂ ।
ତେନୈବ ସତ୍ୟ ଦେବସ୍ୟ କରିଷ୍ୟେ ବ୍ରତମୁତ୍ତମଂ । ୯ ।
ଇତି ସଚିନ୍ତ୍ୟ ମନସା କାଷ୍ଠଂ ଧୃତ୍ୱା ତୁ ମସ୍ତକେ ।
ଜଗାମ ନଗରେ ରମ୍ୟେ ଧନିକା ଯତ୍ର ସସ୍ଥିତି । ୧୦ ।
ତଦ୍ଦିନେ କାଷ୍ଠ ମୂଲ୍ୟଂ ଚ ଦ୍ୱିଗୁଣଂ ପ୍ରାପ୍ତ ବାନସୌ ।
ତତଃ ହୃଦୟ ପ୍ରସନ୍ନ ସୁପକ୍ୱକଦଳୀଫଳଂ । ୧୧ ।
ଶର୍କରା ଚ ଘୃତଂ ଦୁଗ୍ଧଂ ଗୋଧୂମସ୍ୟ ଚ ଚୂର୍ଣ୍ଣକଂ
କୃତ୍ୱୈକତ୍ର ସପାଦଂ ଚ ଗୃହୀତ୍ୱା ଗୃହମାଯଯୌ । ୧୨ ।

---

ତଦନ୍ତେ ପ୍ରସାଦ ଖାଇଣ । ଜଳ ମାଗିଣ କଲା ପାନ ॥
ସେ ସ୍ଥାନେ ସତ୍ୟଦେବ ଚିନ୍ତା । କରିଣ ମନେ କଲ୍ପିଲା ତା । ୮ ।
ଏ କାଷ୍ଠ ଗ୍ରାମକୁ ନେଇଣ । ଯହିଁ ମୁଁ ବିକିବି ଲଭେଣ ॥
ସେ ଦ୍ରବ୍ୟେ ସତ୍ୟପୀର ବ୍ରତ । କରିବି ନିଶ୍ଚେ ଏ ମୋ ସତ୍ୟ । ୯ ।
ଏମନ୍ତେ ଚିନ୍ତି ସେ ଉଠିଲା । କାଷ୍ଠକୁ ମୁଣ୍ଡରେ ବହିଲା ॥
ଯେ ନଗ୍ରେ ଧନିଙ୍କର ବାସ । ସେ ସ୍ଥାନେ ହୋଇଲା ପ୍ରବେଶ ୧୦
ସେ ଦିନ କାଷ୍ଠକୁ ଦ୍ୱିଗୁଣ । ବିକଣ ପାଇଲା ଦ୍ରବିଣ ॥
ସେଠାରୁ ଆନନ୍ଦ ମନରେ । ଗୃହକୁ ଚଳିଲା ସତ୍ୱରେ ॥
ସୁପକ୍ୱ କଦଳୀ ଯେ ଫଳ । କିଣି ଆଣିଣ କଲା ଠୂଳ । ୧୧ ॥
ଶର୍କରା ଗୋ ଦୁଗ୍ଧ ଯେ ଘୃତ । ଗୋଧୂମ ଚୂର୍ଣ୍ଣାଦି ସହିତ ॥
ପୂଜା ସାମଗ୍ରୀ କିଣି ଯାହା । ଗୃହେ ପ୍ରବେଶି କାଠୁରିଆ । ୧୨ ॥

ତତୋ ବନ୍ଧୂନ୍ ସମାହୂୟ ଚକାର ବଧିନା ବ୍ରତଂ ।
ତଦ୍‌ବ୍ରତସ୍ୟ ପ୍ରସାଦେନ ଧନ ପୁତ୍ରାନ୍ୱିତୋଽଭବେତ୍ । ୧୩ ।
ଇହଲୋକେ ସୁଖଂ ଭୂକ୍ତ୍ୱାଚାନ୍ତେ ସତ୍ୟପୁରଂ ଯଯୌ ।
ପୁନରନ୍ୟତ୍ ପ୍ରବକ୍ଷ୍ୟାମି ଶୃଣୁଧ୍ୱ ମୁନି ସତ୍ତମା ୧୪ ।

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ
ବ୍ରତପୂଜା କଥାୟାଂ କାଷ୍ଠବନ୍ଧେତୋପାଖ୍ୟାନେ
ନାମୋ ଚତୁର୍ଥୋଽଧ୍ୟାୟ ।



| | |
|---|---|
| ବନ୍ଧୁ ବାନ୍ଧବ ନିମନ୍ତ୍ରିଲା | ଶ୍ରୀ ସତ୍ୟଦେବ ପୂଜା କଲା ‖ |
| ସେ କାଠୁରିଆ ବ୍ରତ ଫଳେ | ବଢ଼ିଲା ଧନପୁତ୍ର ଭଲେ । ୧୩ । |
| ଜୀବତେ ସୁଖ ଭୋଗ କଲା | ଅନ୍ତେ ସେ ସତ୍ୟପୁର ଗଲା ‖ |
| ହେ ମୁନି ଗଣେ ଏବେ ଶୁଣ | କହିବା ଆନ କଥାମାନ । ୧୪ ‖ |
| ହେ ସାଧୁଜନେ ବୋଲ ହରି | ବ୍ରତ କରଣ ଯାଅ ତରି ‖ |
| ଏ କାଠୁରିଆର ଚରିତ | ଅମୃତ ରସମୟ ଗୀତ ‖ |
| ଶ୍ରୀ ସତ୍ୟନାରାୟଣ ବ୍ରତ | ଚତୁର୍ଥ ଅଧ୍ୟା ସମାପତ ‖ |
| କହେ ମେହେର ନାରାୟଣ | ଭରସା, ପ୍ରଭୁ ନାରାୟଣ । ୦ । |

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ
ବ୍ରତପୂଜା କଥାୟାଂ କାଷ୍ଠବନ୍ଧେତାଙ୍କ ଉପାଖ୍ୟାନ
ନାମ ଚତୁର୍ଥ ଅଧ୍ୟାୟ ।



## ପଞ୍ଚମ ଅଧ୍ୟାୟ

## ଅଥ ଉଲ୍‌କାମୁଖ ରାଜା ଉପାଖ୍ୟାନଂ

ଶ୍ରୀ ସୂତ ଉବାଚ ।

ଆସୀଦୁଲ୍‌କାମୁଖୋ  ନାମ୍ନା ନୃପତ୍ତିଙ୍କନାଂ ବରଃ
ଜତେନ୍ଦ୍ରିୟଃ ସତ୍ୟବାଦୀ ଯଯୌ ଦେବାଳୟଂ ପ୍ରତି । ୧ ।
ଦିନେ ଦିନେ ଧନଂ ଦତ୍ତ୍ୱା ସ ଦ୍ୱିଜାନ୍ ସମତୋଷୟତ୍ ।
ଭାର୍ଯ୍ୟା ତସ୍ୟ ପ୍ରମୁଗ୍‌ଧା ଚ ସରୋଜବଦନା ସତୀ । ୨ ।
ଭଦ୍ରଶୀଳା ନଦୀତଟରେ ସତ୍ୟସ୍ୟ ବ୍ରତମାଚରେତ୍ ।
ଏତସ୍ମିନ୍ନନ୍ତରେ ତତ୍ର ସାଧୁରେକଃ ସମାଗତଃ । ୩ ।

---

## ପଞ୍ଚମ ଅଧ୍ୟାୟ ।

## ଶ୍ରୀ ଉଲ୍‌କାମୁଖ ରାଜା ଉପାଖ୍ୟାନ

ଶ୍ରୀ ସୂତ ଉବାଚ

ସୂତ କହନ୍ତି ଅନୁରାଗେ । ଶୌନକ ମୁନଙ୍କର ଆଗେ ॥
ମୃତ୍ୟେ ଉଲ୍‌କାମୁଖ ନାମେଣ, । ଥିଲେ ଯେ ଧାର୍ମିକ ରାଜନ ॥
ଯେ ସତ୍ୟବାଦୀ ଜତେନ୍ଦ୍ରିୟ । ବିବେକ ଶାନ୍ତଶୀଳ ପ୍ରିୟ ॥
ଦେବାଳୟକୁ ନତ୍ୟେ ଯାଇ । ପୂଜଇ ଦେବାଦେବୀ ତହିଁ । ୧ ।
ଧନ ଜନରେ ପରିପୂର୍ଣ୍ଣ । ଯେସନେ ଅଳକା ଭୁବନ ॥
ବିପ୍ରମାନଙ୍କୁ ନତ୍ତ ଧନ । ଦେଇ ତୋଷଇ ଏସ ରାଜନ ॥
ପ୍ରମୁଗ୍‌ଧା ନାମେ ତାର ନାରୀ । ସରୋଜ ମୁଖି ସୁକୁମାରୀ । ୨ ।
ସେ ଭଦ୍ରଶୀଳା ନଦୀତଟରେ । ସେ ରାଜାରାଣୀ ଭକ୍ତିଭରେ ॥
ଆନନ୍ଦେ ସତ୍ୟଦେବ ପୂଜା । କରନ୍ତି ତହିଁ ରାଣୀ ରାଜା ॥
ଦିନେ ଏମନ୍ତ ପୂଜା ବେଳେ । ଏକ ବଣିକ ଆସି ମିଳେ । ୩ ।

ବାଣିଜ୍ୟାର୍ଥଂ ବହୁଧନୈ ରତ୍ନୈରନେକୈଃ ପରିପୂରିତଂ
ନାବଂ ସଂସ୍ଥାପ୍ୟ ତତ୍ତୀରେ ଜଗାମ ନୃପତିଂ ପ୍ରତି । ୪ ।
ଦୃଷ୍ଟ୍ୱା ତଦ୍ବ୍ରତଂ ସମ୍ୟକ୍ ପ୍ରପଚ୍ଛ ବିନୟାନ୍ୱିତଃ ।

ସାଧୁ ଉବାଚ ।

କିମିଦଂ କୁରୁଷେ ରାଜନ୍ ଭକ୍ତିଯୁକ୍ତେନ ଚେତସା ।
ପ୍ରକାଶ କୁରୁ ତତ୍ସର୍ବଂ ଶ୍ରୋତୁମିଚ୍ଛାମି ସାଂପ୍ରତଂ । ୫ ।

ରାଜୋବାଚ ।

ପୂଜନଂ କ୍ରିୟତେ ସାଧୋ ବିଷ୍ଣୋରତୁଳ ତେଜସଃ ।
ବ୍ରତଂ ଚ ସ୍ୱଜନୈଃ ସାର୍ଦ୍ଧଂ ପୁତ୍ରାଦ୍ୟ ପ୍ରାପ୍ତୟେ ମୟା । ୬ ।

---

ବାଣିଜ୍ୟ କରିବା ନିମିତ୍ତ । ଘେନି ଆନନ୍ଦେ ବହୁ ବିତ୍ତ ॥
ଅନେକ ପ୍ରକାର ଜିନିସ । ନାବରେ ଭରିଣ ଧନେଶ ॥
ସେ ନଦୀ ତଟରେ ମିଳିଲା । ସେଠାରେ ପୂଜାକୁ ଦେଖିଲା ॥
ନୃପ ସନ୍ନିଧେ ହେଲା ଯାଇ । କହଇ ସବିନୟ ହୋଇ । ୪ ।

ସାଧୁ ଉବାଚ

ହେ ମହାରାଜା ଏହିଠାରେ । କି ପୂଜା କରନ୍ତି ଭକ୍ତିରେ ॥
ତାହା ମୋ ଆଗରେ ପ୍ରକାଶ । କରିଣ କହ ନରଈଶ ॥
ଶୁଣିବାପାଇଁ ବଳେ ମନ । ଏଣୁ ପୁଚ୍ଛଇ ହେ ରାଜନ ॥

ରାଜା ଉବାଚ ।

ବଣିକ ବାକ୍ୟରେ ନୃପତି । କହଇ ହୋଇ ହୃଷ୍ଟମତି ॥
ଯେ ହରି ସତ୍ୟ ନାରାୟଣ । ଅତୁଳ ତେଜା ଭଗବାନ ॥
ସେ ପ୍ରଭୁଙ୍କର ପୂଜା ଏହି । କରୁଛି ଭକ୍ତି ଚିତ୍ତେ ମୁହିଁ ॥
ସ୍ୱଜନ ସଙ୍ଗେ ବହୁଦିନ । ପୂଜିଲେ ସତ୍ୟ ନାରାୟଣ ॥
ତାଙ୍କ କୃପାରେ ଧନଜନ । ପାଇଲି ଆହେ ମହାଜନ । ୬ ।

## ସାଧ ଉବାଚ

ଇତ୍ୟୁବାଚ ତତୋନତ୍ୱା ରାଜନଂ ସାଦରଂ ବଚଃ ।
ସାଙ୍ଗ କଥୟମେ ରାଜନ୍ ବ୍ରତଂମେ ତତ୍କରୋମ୍ୟହଂ । ୭ ।
ମମାପି ସନ୍ତତିନାସ୍ତି ଏତସ୍ମାଦ୍‌ଭବତଂ ଧ୍ରୁବଂ ।
ତତୋ ନବୃତ୍ୟ ବାଣିଜ୍ୟାତ୍‌ସାନନ୍ଦେ ଗୃହମାଗତଃ । ୮ ।
ଭାର୍ଯ୍ୟାଯୈ କଥିତଂ ସର୍ବ ବ୍ରତଂ ଚ ସନ୍ତତ ପ୍ରଦଂ ।
ତଦାବ୍ରତଂ କରିଷ୍ୟାମି ଯଦାମେ ସନ୍ତତ ଭବେତ୍ । ୯ ।

---

## ଶ୍ରୀ ସାଧୁ ଉବାଚ

ରାଜାଙ୍କ ଏହି ବାକ୍ୟ ଶୁଣି । ସଧୀରେ କହଇ ସେ ଧନ ॥
ହେ ମହାରାଜା ଦୟା ବହି । ବ୍ରତ ବିଧାନ ଦିଅ କହି ॥
ଏ ବ୍ରତ କରିବ ନିଶ୍ଚୟ । କହିଲି ଆହେ ନରରାୟ । ୭ ।
ନାହିଁ ମୋହର ସୁତାସୁତ । ଏ ବ୍ରତ କରିବି ମୁଁ ସତ୍ୟ ॥
ତ ଶୁଣି ସାଧୁ ବାକ୍ୟେ ରାଜା । କହିଲ୍ ସତ୍ୟଦେବ ପୂଜା ॥
ରାଜାଙ୍କଠାରୁ ବ୍ରତ ଶୁଣି । ଅତି ଆନନ୍ଦ ହୋଇ ଧନ ॥
ବାଣିଜ୍ୟେ ନ କରି ଗମନ । ଗୃହେ ଫେରିଲ୍ ମହାଜନ । ୮ ।
ତା ଭାର୍ଯ୍ୟା ଆଗରେ ସମସ୍ତ । କହିଲ୍ ବ୍ରତର ବୃତ୍ତାନ୍ତ ॥
ସନ୍ତାନ ଦାତା ବ୍ରତ ଏହି । କଲେ ଗୋ ସନ୍ତାନ ମିଳଇ ॥
ଏଣୁ ମୁଁ କରୁଛି କାମନା । ଯେବେ ପାଇବି ପୁତ୍ର ସିନା ॥
ତେବେ ମୁଁ ଏ ବ୍ରତ କରିବି । ହରିଙ୍କି ଅବଶ୍ୟ ପୂଜିବି ॥
ଏମନ୍ତ କହି ସେ ସାଧୁ ତ । ନିଜକାର୍ଯ୍ୟରେ ହେଲ ରତ ।୯।

ଅଳ୍ପକାଳେ ଗତେ ତସ୍ୟ ଭାର୍ଯ୍ୟା ଲୀଳାବତୀ ସତୀ ।
ଗର୍ଭଯୁକ୍ତାନନ୍ଦଚିତ୍ତାଃଭବଦ୍ଧର୍ମପରାୟଣା । ୧୦ ।
ପୂର୍ଣ୍ଣେ ଗର୍ଭେ ତତୋ ଜାତା ବାଳିକା ଚୈବ ସୁନ୍ଦରୀ ।
ଦିନେ ଦିନେ ବର୍ଦ୍ଧମାନା ଶୁକ୍ଳପକ୍ଷେ ଯଥା ଶଶୀ । ୧୧ ।
ତତୋ ବଣିକ ସୁତାୟାଶ୍ଚ ଜାତକାଦିନ୍ ସମାପ୍ୟ ଚ ।
ନାମ୍ନା କଳାବତୀ ଚେତି ତନ୍ନାମ କରଣ କୃତମ୍ । ୧୨ ।

ଲୀଳାବତୀ ଉବାଚ ।

ତତୋ ଲୀଳାବତୀ ପ୍ରାହ ସ୍ୱାମିନଂ ମଧୁରଂ ବଚଃ ।
ନ କରୋଷି କମର୍ଥଂ ଚ ପୂର୍ବ ସଙ୍କଳ୍ପିତ ବ୍ରତଂ । ୧୩ ।

---

ତଦନ୍ତେ କେତୁଦିନ ପରେ । ଧନ ଭାରିଜା ଭକ୍ତଭରେ ॥
ଭର୍ତ୍ତାରେ ହୋଇଲା ସଙ୍ଗତ । ଗର୍ଭରେ ଧଇଲା ସନ୍ତତ ॥
ଧର୍ମରେ ପରାୟଣା ହେଲା । ବହୁ ସୁଖରେ ଦିନ ନେଲା ।୧୦।
ତା ଗର୍ଭ ହୁଅନ୍ତେ ସମ୍ପୂର୍ଣ୍ଣ । କନ୍ୟା ଗୋଟିଏ ହେଲା ଜନ୍ମ ॥
ଅତି ସୁନ୍ଦରୀ ରୂପବତୀ । ସବ ଲକ୍ଷଣ ଯୁକ୍ତା ସତୀ ॥
ଦିନକୁ ଦିନ ସେ କୁମାରୀ । ବଢ଼ିଲା ଶୁକ୍ଳ ଶଶୀ ପରି । ୧୧ ।
ତହୁଁ ସେ ବଣିକ ହରଷେ । କନ୍ୟାର ନାମଦେବା ଆଶେ ॥
ବ୍ରାହ୍ମଣ ବନ୍ଧୁ ବାନ୍ଧବଙ୍କୁ । ନିମନ୍ତ୍ରି ଆଣିଲା ଗୃହକୁ ॥
ନାମ କରଣ କରାଇଲା । ତା ନାମ କଳାବତୀ ଦେଲା ॥
ଏମନ୍ତ ସାଧୁ ମୋହ ଗଲା । ଶ୍ରୀ ସତ୍ୟବ୍ରତକୁ ଭୁଲିଲା । ୧୨ ।

ଲୀଳାବତୀ ଉବାଚ ।

ଏପରି ଦେଖି ଲୀଳାବତୀ । ସ୍ୱାମୀକୁ କହଇ ଭାରତୀ ॥
ହେ କାନ୍ତ ପୂର୍ବ ସଙ୍କଳ୍ପିତ । କାହିଁକି ନ କରୁଛ ବ୍ରତ । ୧୩

ଶ୍ରୀ ସାଧୁ ଉବାଚ ।

ବିବାହ କାଳେ କିଂ ତ୍ୱସ୍ୟାଃ କରିଷ୍ୟାମି ବ୍ରତଂପ୍ରିୟେ ।
ଇତ୍ୟୁକ୍ତ୍ୱାର୍ଯ୍ୟା ସମାଶ୍ୱାସୀ ଜଗାମ ନଗରଂ ପ୍ରତି । ୧୪ ।

ତତଃ କଳାବତୀ କନ୍ୟା ବର୍ଦ୍ଧିତା ପିତୃବେଶ୍ମନି ।
ଦୃଷ୍ଟ୍ୱା କନ୍ୟାଂ ତତୋ ସାଧୁର୍ନଗରେ ବନ୍ଧୁଭିଃ ସହ । ୧୫ ।
ମନ୍ତ୍ରୟିତ୍ୱା ତତୋ ଦୂତଂ ପ୍ରେଷୟାମାସ ଧର୍ମବିତ ।
ବିବାହାର୍ଥଂ ଚ କନ୍ୟାୟାଃ ବରଂ ଶ୍ରେଷ୍ଠ ବିଚାରକଃ । ୧୬ ।

---

ଶ୍ରୀସାଧୁ ଉବାଚ ।

ପ୍ରିୟାର ବଚନ ଶୁଣିଣ । ହସି କହଇ ମହାଜନ ॥
କଳାବତୀର ବିଭାକାଳେ । ସେ ବ୍ରତ କରିବି ମୁଁ ଭଲେ ॥
ମୋ ମନେ ରହିଛି ଏ କଥା । ପ୍ରିୟେ ତୁ ନ କର ଗୋ ଚିନ୍ତା ॥
ପତ୍ନୀକୁ ଆଶ୍ୱାସନା ଦେଇ । ଧନ ରହିଲା ଗୃହେ ଯାଇ । ୧୪ ।

ତଦନ୍ତେ କେତେଦିନ ଗଲା । କୁମାରୀ ବଢ଼ିଣ ଆସିଲା ॥
ପିତା ଗୃହରେ ଯଉବନୀ । ହେବାରୁ ଦେଖିଣ ତା ଧନୀ ॥
ଲଭିଣ ପରମ ସନ୍ତୋଷ । ବନ୍ଧୁ ବାନ୍ଧବ ଡାକି ପାଶ ॥
କନ୍ୟାର ବିବାହ ସକାଶେ । ବସି ବିଚାର କଲା ତୋଷେ । ୧୫ ।

ତହୁଁ ସେ ଡକାଇ ଦୂତକୁ । ଆଣିଲା ତାହାର ଗୃହକୁ ॥
କନ୍ୟାର ପାଇଁ ଯୋଗ୍ୟପାତ୍ର । ଖୋଜିଣ ଆଣିବା ନିମିତ୍ତ ॥
ତାହାକୁ ଦେଇ ଧର୍ମବିତ୍ତ । ପେଶିଲା ହୋଇ ହରଷିତ ॥
ବଣିକ ଆଜ୍ଞା ପାଇ ଚର । ଶୁଭରେ ହୋଇଲା ବାହାର । ୧୬ ।

ତେନାଜ୍ଞପ୍ତସ୍ତୁ ଦୂତୋଽସୌ କାଞ୍ଚନଂ ନଗରଂ ଯଯୌ ।
ତସ୍ମାଦେକଂ ବଣିକ୍ପୁତ୍ରଂ ସମାଦାୟ ଗତୋହି ସଃ । ୧୭ ।
ଦୃଷ୍ଟ୍ୱା ତଂ ସୁନ୍ଦରଂ ବାଳଂ ବଣିକ୍ପୁତ୍ରଂ ଗୁଣାନ୍ୱିତଂ ।
ଜ୍ଞାତିଭିର୍ବନ୍ଧୁଭିଃ ସାର୍ଦ୍ଧଂ ପରିତୁଷ୍ଟେନ ଚେତସା । ୧୮
ଦତ୍ତବାନ୍ ସାଧୁ ପୁତ୍ରୀଂ ତୁ କନ୍ୟା ତସ୍ମୈ ବିଧାନତଃ ।
ତତୋଭାଗ୍ୟ ବଶାତେନ ବିସ୍ମୃତଂ ବ୍ରତମୁତ୍ତମଂ । ୧୯ ।
ବିବାହ ସମୟେଽପ୍ୟସ୍ୟାସ୍ତେନ ରୁଷ୍ଟୋଭବେଦ୍ ବିଭୁଃ ।
ତତଃ କାଳେନଃ କସ୍ୟତା ନିଜ ଧର୍ମଃ ବିଶାରଦଃ । ୨୦ ।

---

ସେଠାରୁ ବହନେ ଚଳିଲା । କାଞ୍ଚନ ନଗ୍ରରେ ମିଳିଲା ॥
ସେହି ନଗ୍ରରେ ବୈଶ୍ୟପୁତ୍ର । ଦେଖିଲା ବର ଉପଯୁକ୍ତ ॥
ତାହାକୁ ବରଣ ଆଣିଲା । ଧନ ଗୃହରେ ପ୍ରବେଶିଲା ।୧୭ ।
ବଣିକ ବାଳକ ସୁନ୍ଦର । ସକଳ ଗୁଣେ ସେ ଚତୁର ॥
ସାଧୁ ଯେ ତାର ବନ୍ଧୁଗଣ । ଗୃହକୁ ଡ଼ାକିଲା ବହନ ॥
ସମସ୍ତେ ହେଲେ ଉନ୍ନତ । ଦେଖିଲେ ବର ଉପଯୁକ୍ତ ॥
ଆନନ୍ଦ ହୋଇଲେ ବହୁତ । ବନ୍ଧୁ ସହିତେ ସେ ସାଧୁତ ।୧୮ ।
ବଣିକ ପୁତ୍ରେ କନ୍ୟାଦାନ । କରି ଆନନ୍ଦେ ମହାଜନ ॥
ଅନେକ ଉତ୍ସବ ସେ କଲା । ବିଧ୍ୟନୁସାରେ ବିଭା ଦେଲା ॥
ବିବାହ କାର୍ଯ୍ୟ ଶେଷ ପରେ । ସାଧୁ ଯେ ବ୍ରତକୁ ନ ସ୍ମରେ ॥
ଦୁର୍ଭାଗ୍ୟ ବଳୁଁ ସେ ସାଧୁର । ବ୍ରତ କାମନା ହେଲା ଦୂର ।୧୯ ।
ବିବାହ କାଳେ ମହାଜନ । ବ୍ରତ ନ କରିବାରୁ ଜାଣ ॥
ଯେ ହରି ସତ୍ୟନାରାୟଣ । ସାଧୁର ପ୍ରତି କୋପମନ ॥
ବିବାହ କଟୁ ଦିନ ପରେ । ବଣିକ ଜାମାତା ସଙ୍ଗରେ ॥
ସେକାଳେ ସେହି ଧନେଶ୍ୱର । ନିଜ କର୍ମରେ ତତପର ।୨୦ ।

ବାଣିଜ୍ୟକାଂକ୍ଷୟା ଶୀଘ୍ରଂ ଜାମାତା ସହିତୋ ବଣିକ୍ ।
ରତ୍ନାକରପୁରେ ରମ୍ୟେ ଗତ୍ୱାସିନ୍ଧୁ ସମୀପତଃ । ୨୧ ।
ବାଣିଜ୍ୟମକରୋତ୍ ସାଧୁ ଜାମାତ୍ରା ଶ୍ରୀ ପିତାମହଃ ।
ଏତସ୍ମିନ୍ନେବ କାଳେ ତୁ ସତ୍ୟନାରାୟଣଃ ପ୍ରଭୁଃ । ୨୨ ।
ଭ୍ରଷ୍ଟ ପ୍ରତିଜ୍ଞମାଲୋକ୍ୟ ଶାପଂ ତସ୍ମୈ ପ୍ରଦତ୍ତବାନ୍ ।
ଶ୍ୱଃ ପ୍ରଭୃତି କପୂକାଳଂ ମହଦୁଃଖଂ ଭବିଷ୍ୟତି । ୨୩ ।
ତସ୍ମିନ୍ନେବ ଦିନେ ରାଜ୍ଞୋ ଧନମାଦାୟ ତସ୍କରଃ ।
ତେନୈବ ବର୍ତ୍ମନା ଯାତଃ ପୃଷ୍ଠତଦେଶଂ ବିଲୋକୟନ୍ । ୨୪ ।

---

ବାଣିଜ୍ୟ ବଳାଇଣ ମନ । ଜାମାତା ସଙ୍ଗତେ ଘେନିଣ ॥
ସମୁଦ୍ର ତଟେ ରତ୍ନପୁର । ଅଛଇ ସୁରମ୍ୟ ନଗର ॥
ସେ ନଗ୍ରେ ଜାମାତା ସହିତ । ପ୍ରବେଶ ହୋଇଲା ସାଧୁତ । ୨୧ ।
ସେ ନଗ୍ରେ ଜାମାତୃ ସଙ୍ଗର । ସୁଖେ କରଇ କାରବାର ॥
ସେ ଚନ୍ଦ୍ରକେତୁ ତହିଁ ରାଜା । ସୁଖେ ପାଳଇ ଜନ ପ୍ରଜା ॥
ସେ କାଳେ ସତ୍ୟନାରାୟଣ । ମାନସେ ହୋଇ କୋପମନ । ୨୨ ।
ତାହାର ଭ୍ରଷ୍ଟ ସଂକଳପ । ଦେଖିଣ ତାକୁ ଦେଲେ ଶାପ ॥
ବୋଇଲେ ଆରେ ଧନେଶ୍ୱର । ଗରବ କଲୁ ତୁ ମନର ॥
ତୋ ଧନ ପ୍ରଭୃତି ଯେତେକ । ଗୁପତ ହେଉରେ ବଣିକ ॥
ଏବେ ତୁ ମହା ଦୁଃଖ ପାଇ । ଏଠାରେ ବଞ୍ଚ ରହ ତୁହି । ୨୩ ।
ଦିନେ ରଜନ ସମସ୍ତରେ । ମିଳଣ କେତେକ ତସ୍କରେ ॥
ସେ ଦେଶ ରାଜାଙ୍କର ଧନ । ଗୃହରେ ପଶି କଲେ ଶୂନ୍ୟ ॥
ସେ ବିତ୍ତ ନେଇ ଶୈରବେଗେ । ଗୁଡ଼ିଲେ ଧନ ପଛଭାଗେ । ୨୪ ।

ସମ୍ପ୍ରାପ୍ତାବଜନ୍ ଦୂତାନ୍ ଦୃଷ୍ଟ୍ବାଭୀତେନ ଚେତସା
ଧନଂ ସଂସ୍ଥାପ୍ୟତତ୍ରୈବ ଦ୍ରୁତଂ ଯାତା ମଗମତ୍ତଖିନଂ । ୨୫ ।
ତତୋଦୂତା ସମାୟାତା ଯାତ୍ରାସ୍ତ ସଜ୍ଜନୋ ବଣିକ୍ ।
ଦୃଷ୍ଟ୍ବା ନୃପଧନଂ ତତ୍ର ବଦ୍ଧ୍ବାଦୂତ ବଣିକ୍‌ସୁତଃ । ୨୬ ।
ହର୍ଷଯୁକ୍ତାଃ ଧାବମାନା ଊଚୁର୍ନୃପ ସମୀପତଃ ।
ତସ୍କରୌ ଦ୍ବୌ ସମାନୀତୌ ବିଲୋକ୍ୟାଜ୍ଞାପୟ ପ୍ରଭୋଃ । ୨୭ ।
ତେନାଜ୍ଞପ୍ତସ୍ତତୋ ଶୀଘ୍ରଂ ଦୃଢ ବଦ୍ଧ୍ବା ତୁ ତାବୁଭୌ ।
ସ୍ଥାପୟାମାସୁରେ ବାମ କାରାଗାରେ ବିଚାରତଃ । ୨୮ ।

---

ଗୋଡ଼ାନ୍ତେ ତହୁଁ ଦୂତମାନେ । ଦେଖିଣ ଭୟେ ଦସ୍ୟୁଗଣେ ॥
ପଳାଇଗଲେ ଏଣେ ତେଣେ । ଧରା ନ ଦେଲେ କେହ୍ନ ଜଣେ ॥
ସେଠାରୁ ରାଜା ଦୂତମାନେ । ମିଳିଲେ ବଣିକ ଯେ ସ୍ଥାନେ ॥
ରାଜାଙ୍କ ଗୃହ ଚୋର ଧନ । ସମସ୍ତ ହୋଇଛି ସ୍ଥାପନ । ୨୫ ।
ତା ଦେଖି ରାଜା ଦୂତ ଗଣ । ହୋଇଣ ଅତି କୋପମନ ॥
ସେ ସ୍ଥଳେ ଦେଖି ରାଜଦୂତ । ବନ୍ଧନ କଲେ ବଣିକ୍‌ସୁତ ॥
ହରଷେ ରାଜାଙ୍କ ଛାମୁରେ । ପ୍ରବେଶ କଲେ ଧାଉଁକାରେ ॥
ଦୂତେ ଯେ ରାଜାଙ୍କୁ ଜୁହାରିଣ । ବୋଲନ୍ତି ବିନୟେ ବଚନ ॥
ହେ ଦେବ ଚୋର ଦୁଇଜଣ । ଭଣ୍ଡାରୁ ଚୋର କଲେ ଧନ ॥
ବାନ୍ଧିଣ ଆଣିଲୁ ଛାମୁରେ । କି ଆଜ୍ଞା ହେଉଛି ସତ୍ୱରେ । ୨୭ ।
ଦୂତଙ୍କ ବାଣୀ ଶୁଣି ରାଜା । ବୋଇଲେ ହୋଇ କୋପଜ୍ୱା ॥
ଏହାଙ୍କୁ ନେଇ କାରାଗାରେ । ଯତ୍ନରେ ରଖି ଜଗ ଦ୍ୱାରେ ॥
ପରେ ଏ ଦୁଇ ଦସ୍ୟୁଙ୍କର । ବୁଝିଣ କରିବା ବିଚାର । ୨୮ ।

ଶ୍ରୀ ସୂତ ଉବାଚ ।

ନ ମୟା ସତ୍ୟଦେବସ୍ୟ ନ ଶ୍ରୁତଂ ଚ ତଯୋର୍ବଚଃ ।
ତତସ୍ତଯୋର୍ଦ୍ଧନଂ ଯଚ୍ଚ ଗୃହୀତଂ ଚନ୍ଦ୍ରକେତୁନା । ୨୯ ।
ତତ୍ପାପାତ ତଯୋର୍ଗେହେ ଭାର୍ଯ୍ୟା ଚ ଦୁଃଖିତା ଭବେତ୍ ।
ଚୌରେଣାପ ହୃତଂ ସର୍ବଂ ଗୃହେ ଯଚ୍ଚ ସ୍ଥିତଂ ଧନଂ । ୩୦ ।
ଅଧି ବ୍ୟାଧି ସମାଯୁକ୍ତା କ୍ଷୁତ୍‌ପିପାସାସା କୁଳା ।
ଅନ୍ନଚିନ୍ତା ପରାଭୂତ୍ବା ବଭ୍ରାମ ଚ ଗୃହେ ଗୃହେ । ୩୧ ।
ତଥା କଳାବତୀ କନ୍ୟା ବଭ୍ରାମ ପ୍ରତି ବାସରଂ
ଏକସ୍ମିନ ଦିବସେ ରାତ୍ରୌ କ୍ଷୁଧାର୍ତ୍ତା ଦ୍ବିଜ ମନ୍ଦିରଂ । ୩୨ ।

ଶ୍ରୀ ସୂତ ଉବାଚ

ଏଥୁ ଅନ୍ତରେ ମୁନିଗଣ । ଶୁଣ ଆନନ୍ଦେ ଦେଇମନ ॥
ଶ୍ରୀ ସତ୍ୟପୀରଙ୍କ ମାୟାରେ । ରାଜା ଯେ କିଛି ନ ଶୁଣିଲେ ॥
ସାଧୁର ଥିଲା ଯେତେ ଧନ । ନେଲା ଆଣିଲା ସେ ରାଜନ ।୨୯।
ସେ ସତ୍ୟଦେବଙ୍କର ଶାପ । ସାଧୁକୁ ହେବାରୁ ପ୍ରକୋପ ॥
ତେଣେ ସେ ସାଧୁର ଗୃହରେ । ମେଳ ହୋଇଣ କେତେ ଚୋରେ ॥
ଗୃହେ ପଶିଣ ବହୁଧନ । ନେଇଣ କରିଦେଲେ ଶୂନ୍ୟ ।୩୦।
ସାଧୁର ଭାର୍ଯ୍ୟା ଝିଅ ଦୁଇ । କ୍ଷୁଧା ପିପାସା ଆଦି ସହି ॥
ଅନ୍ନ ବିହୀନେ ଚିନ୍ତା କରି । ରହିଲେ କରମ ଆଦରି ॥
ପ୍ରାଣ ବିକଳେ ଭିକ୍ଷା ପାଇଁ । ମାଗିଲେ ଦ୍ୱାରେ ୨ ଯାଇ । ୩୧ ।
କଳାବତୀ ଯେ ଦିନକରେ । କ୍ଷୁଧାରେ ସନ୍ଧ୍ୟା ସମୟରେ ॥
ଭିକ୍ଷା ମାଗିବା ପାଇଁ ମନ । ମିଳିଲା ବ୍ରାହ୍ମଣ ସଦନ । ୩୨ ।

ଗତ୍ୱା ଦଦର୍ଶ ବ୍ରତଂ ତତ୍ର ସତ୍ୟନାରାୟଣସ୍ୟ ଚ ।
ଉପବିଶ୍ୟ କଥାଂ ଶ୍ରୁତ୍ୱା ବରଂ ପାର୍ଥାଭିବାଞ୍ଛିତଂ ।୩୩।
ପ୍ରସାଦଂ ଭକ୍ଷଣଂ କୃତ୍ୱା ଯଯୌ ରାତ୍ରେ ଗୃହଂ ପ୍ରତି ।
ତତୋ ଲୀଳାବତୀ କନ୍ୟା ଭର୍ତ୍ସୟାମାସ ତଂ ଭୃଶଂ ।୩୪।
ପୁତ୍ରି ରାତ୍ରୌ ସ୍ଥିତା କୁତ୍ର କିଂ ତେ ମନସି ବର୍ତ୍ତତେ ।
କନ୍ୟା କଳାବତୀ ପ୍ରାହ ମାତରଂ ପ୍ରତି ସତ୍ୱରଂ ।୩୫।
ଦ୍ୱିଜାଳୟେ ବ୍ରତଂ ମାତ ଦୃଷ୍ଟଂ ବାଞ୍ଛିତ ସିଦ୍ଧିଦଂ ।
ତଚ୍ଛ୍ରୁତ୍ୱା କନ୍ୟାକାବାକ୍ୟଂ ବ୍ରତଂ କର୍ତ୍ତୁଂ ସମୁଦ୍ୟତା ।୩୬।

---

ଦେଖିଲା ଏକ ବିପ୍ରବର । ପୂଜଇ ସତ୍ୟଦେବ ବୀର ॥
ହରଷେ ନମସ୍କାର କଲା । ଅନେକ ଦୁଃଖ ଜଣାଇଲା ॥
କାମନା କରି ପ୍ରଭୁପାଶେ । କଥା ଶୁଣିଲା ମନତୋଷେ ।୩୩।
ପୂଜାନ୍ତେ ପ୍ରସାଦ ଭକ୍ଷିଲା । ବ୍ରାହ୍ମଣ ଗୃହରେ ରହିଲା ॥
ସେଠାରେ ଭୋଜନ କରିଣ । ରାତିରେ ଶୋଇଲା ହରଷେଣ ॥
ନିଶିହୋଇଲା ଯହୁଁ ଶେଷ । ଗୃହରେ ହୋଇଲା ପ୍ରବେଶ ॥
ଝିଅ ଆସିବା ମାତା ଗୁହିଁ । କୋପେ ବୋଲଇ ରୋଷବହ୍ନି ।୩୪।
ଗତ ରାତ୍ରିରେ ଆଲେ ଝିଅ । କା ଗୃହେ ଥିଲୁ ବେଗେ କହ ॥
ଏହା ତୋହର କେଉଁ ରୀତି । ସ୍ୱଭାବେ ତୁ ଅଟୁ ଯୁବତୀ ॥
ମାତା ବାକ୍ୟରେ କଳାବତୀ । କହଇ ହୋଇ ତୋଷମତି ।୩୫।
ମାଆ ଗୋ ଗତ ରାତ୍ରି ଯାହା । ଦେଖିଲି କହୁଛି ମୁଁ ତାହା ॥
ଅନ୍ନ ନିମିତ୍ତ ବିପ୍ର ଘରେ । ମିଳିଲି ସନ୍ଧ୍ୟା ସମୟରେ ॥
ଏକ ବ୍ରାହ୍ମଣ ତାର ଘରେ । ବସିଣ ସତ୍ୟପୂଜା କରେ ॥
ତାହା ମୁଁ ଦେଖି ଭକ୍ତିଭରେ । କାମନା କଲି ପ୍ରଭୁଠାରେ ॥
ବ୍ରତ ଶୁଣିଣ ଆନନ୍ଦରେ । ରାତ୍ରେକ ରହିଲି ତହିଁରେ ।୩୬।

ସା ସୁତା ସା ବଣିକ୍‌ଭାର୍ଯ୍ୟା ସତ୍ୟନାରାୟଣ ସ୍ୟ ଚ ।
ବ୍ରତଂ ଚକ୍ରେ ବୈ ସାଧ୍ୱୀ ବନ୍ଧୁଭିଃ ସ୍ୱଜନୈଃ ସହ । ୩୭ ।
ଭର୍ତ୍ତୃକା ମାତରୌ କ୍ଷିପ୍ର ମାଟେକ୍ଷେତା ନଜାନସ୍ଥଂ ।
ଇତି ଦ୍ୱିଜବରଂ ବଦ୍ରେ ସତ୍ୟଦେବ ପୁନଃ ପୁନଃ । ୩୮ ।
ଅପରାଧ ଚ ଭର୍ତ୍ତୁର୍ମେ ଜାମାତୁ ର୍କ୍ଷାନ୍ତୁ ମର୍ହସି ।
ବ୍ରତେନ ତସ୍ୟା ସନ୍ତୁଷ୍ଟୋଽସୌ ସତ୍ୟନାରାୟଣ ପ୍ରଭୁଃ । ୩୯ ।
ଦର୍ଶୟା ମାସ ସ୍ୱପ୍ନଂ ସ୍ୱ ଚନ୍ଦ୍ରକେତୁଂ ନୃପୋତ୍ତମଂ ।
ବନ୍ଦନୌ ମୋଚୟ ପ୍ରାତଃ ବଣିଜୌ ନୃପ ସତ୍ତମ । ୪୦ ।

---

ଝିଅ ବଦନୁ ବୈଶ୍ୟନାରୀ । ବ୍ରତ ବିଧାନ ଶୁଣି କରି ॥
ଶ୍ରୀସତ୍ୟନାରାୟଣ ବ୍ରତ । କରିବା ପାଇଁ ତୋଷଚିତ୍ତ ॥
ବିଞ୍ଚିବା ସମ୍ପତ୍ତି ବିକଣ । ପୂଜାର ସାମଗ୍ରୀ ଖଞ୍ଜିଣ ॥
ବନ୍ଧୁ ବାନ୍ଧବ ବିପ୍ରବର । ବରି ପୂଜିଲି ସତ୍ୟପୀର । ୩୭ ।
ପୂଜାନ୍ତେ ସତ୍ୟଦେବ ପାଦେ । ସ୍ତବ କରଇ ଗଦଗଦେ ॥
ହେ ପ୍ରଭୁ ସତ୍ୟ ନାରାୟଣ । ଖଣ୍ଡନ୍ତୁ ଆମ୍ଭର କଷଣ ॥
ମୋ ପତି ଜୁଆଇଁ ଦ୍ୱିଜଣ । କୁଶଳେ ଆସନ୍ତୁ ଗୃହେଣ ॥
ଏହି କରୁଣା ବାରେ କର । ଜଣାଏ ତବ ଶ୍ରୀଛାମୁର । ୩୮ ।
ମୋ ପତି ଜୁଆଇଁଙ୍କ ଦୋଷ । କ୍ଷମା କରନ୍ତୁ ଆହେ ଈଶ ॥
ଯହୁଁ ଏପରି ଲୀଳାବତୀ । ବ୍ରତ କରଣ କଲା ସ୍ତୁତି ॥
ଯେ ହରି ସତ୍ୟନାରାୟଣ । ସନ୍ତୋଷ ହେଲେ ତା ଶୁଣିଣ ॥
ବିଦେଶେ ରତ୍ନସାର ପୁରେ । ସାଧୁ ଜୁଆଇଁ ବନ୍ଦୀ ଥିଲେ ॥
ସେ ଚନ୍ଦ୍ରକେତୁ ରାଜା ପାଶ । ସ୍ୱପ୍ନେ କହିଲେ ପୀତବାସ ॥
ହୋ ରାଜା ରଜନୀ ଶେଷରେ । ଚଞ୍ଚଳେ ମୋହର ଆଜ୍ଞାରେ ॥
ବଣିକ ଜାମାତା ଦୁହିଙ୍କୁ । କାରାରୁ ମୁକ୍ତ କର ତାଙ୍କୁ । ୪୦ ।

ଦେୟଂ ଧନଂ ଚ ତଦ୍ରବ୍ୟଂ ଗୃହୀତଂ ଯତ୍ତ୍ୱୟା ତୟୋଃ ।
ନୋଚେତ୍ତ୍ୱାଂ ନାଶୟିଷ୍ୟାମି ସ ରାଜ୍ୟଂ ଧନପୁତ୍ରକଂ । ୪୧ ।

ଏବମାଭାଷ୍ୟ ରାଜନଂ ଧ୍ୟାନଂ ଗତମ୍ୟାଽଭବତ୍ ପ୍ରଭୁଃ ।
ତତଃ ପ୍ରଭାତସମୟେ ରାଜା ବରଜନୈଃ ସହ । ୪୨ ।

ଉପବିଶ୍ୟ ସଭାମଧ୍ୟେ ପ୍ରାହ ମନ୍ତ୍ରିଜନଂ ପ୍ରତି ।
ବଦ୍ଧାନ୍ ମହାଜନୌ ଶୀଘ୍ରଂ ମୋଚୟେଦ୍‌ବୈ ବଣିକ୍ ସୁତୌ । ୪୩।
ଇତି ରାଜ୍ଞୋ ବଚଃ ଶ୍ରୁତ୍ୱା ମୋଚୟିତ୍ୱା ମହାଜନୌ ।
ସମାନୀୟ ନୃପସ୍ୟାଗ୍ରେ ପ୍ରୋବାଚ ବିନୟାନ୍ୱିତଃ । ୪୪ ।

---

ଆବର ତାହାର ସମ୍ପତ୍ତି । ଯେତେକ ଆଣିଛ ନୃପତି ॥
ଏବେ ତା ଦିଅ ତୁ ବହନ । ଏଣୁଁ କହିଲୁଁ ତୋ ଆଗେଣ ॥
ଆମ୍ଭ ଆଜ୍ଞାକୁ ନାସ୍ତି କଲେ । ନାଶିବୁଁ ସୁତ ବିତ୍ତ କୁଳେ ୪୧ ।
ଏମନ୍ତେ ରାଜାଙ୍କୁ ସ୍ୱପ୍ନେଣ । କହିଣ ସତ୍ୟ ନାରାୟଣ ॥
ତକ୍ଷଣେ ଅନ୍ତର୍ଦ୍ଧାନ ହେଲେ । ରାଜା ଯେ ନିଦରୁ ଉଠିଲେ ॥
ନିଶି ହୋଇଲା ଯହୁଁ ଶେଷ । ପୂର୍ବେ ଉଇଁଲେ ଗ୍ରହାଈଶ ॥
ଯେ ବିଧି ନିତ୍ୟକର୍ମ ସାରି । ଯାଇ ମନ୍ତ୍ରୀଙ୍କୁ ଡାକ କରି । ୪୨ ।
ସଭାରେ ବସିଲା ଯାଇଁଣ । କହିଲା ସ୍ୱପ୍ନକଥା ମାନ ॥
ବଣିକ ଜାମାତା ଦ୍ୱିଜଣ । ବନ୍ଧରେ ରହିଛନ୍ତି ଜାଣ ॥
ତାହାଙ୍କୁ ମୁକ୍ତ କରି ବେଗେ । ଅଣାଅ ମୋହର ଯେ ଆଗେ ।୪୩।
ରାଜାଙ୍କ ଆଦେଶରେ ଦୂତେ । ତକ୍ଷଣେ ଗଲେ ଜଣ କେତେ ।
ବନ୍ଦୀରୁ ଦୁହିଁଙ୍କୁ ଆଣିଲେ । ରାଜା ଆଗରେ ଠିଆ କଲେ ॥
ବିନୟ ହୋଇଣ ଯେ ଦୂତେ । କହନ୍ତି ରାଜାର ଅଗ୍ରତେ । ୪୪ ।

ଆଗତୌ ଦ୍ୱୌବଣିକ୍ ପୁତ୍ରୌ ମୁକ୍ତୌ ନଗ୍ରଡ଼ବନ୍ଧନାତ୍ ।
ତତୋ ମହାଜନୌ ନତ୍ୱା ଚନ୍ଦ୍ରକେତୁଃ ନୃପୋତ୍ତମଃ । ୪୫ ।

ସ୍ମୃତା ଚ ପୂର୍ବବୃତ୍ତାନ୍ତମୁଚତୁର୍ଭୟ ବହ୍ଵଳୌ ।
ରାଜାବଣିକ୍ ସୁତୌ ବାକ୍ୟ ପ୍ରୋବାଚ ସାଦରଂ ବଚଃ ।୪୬।
ଦୈବାତ୍ ପ୍ରାପ୍ତଂ ମହାଦୁଃଖମୀଦାମ ନାସ୍ତବେ ଭୟଂ ।
ଇଦାମନଂତମେବ ମୁକ୍ତାସ୍ତୁଂ କ୍ଷୌର କର୍ମାଦକଂ ଚରନ୍ ।୪୭।
ତତୋ ନୃପବରଃ ଶ୍ରୀମାନ୍ ସ୍ୱର୍ଣ୍ଣରତ୍ନବିଭୂଷଣୈଃ
ଅଳଂକୃତ୍ୱା ବଣିକ୍ ପୁତ୍ରୌ ବଚସା ତୋଷୟନ୍ ଭୃଶଂ ।୪୮ ।

| | | |
|---|---|---|
| କାରାରୁ ବଣିକ ଦି ଜଣ | । ଅଣିଲେ ହେ ମହାରାଜନ | ॥ |
| ତାହା ଦେଖିଣ ନୃପବର | । ଆନନ୍ଦ ହୋଇଣ ଅପାର | ॥ |
| ବଣିକ ଜାମାତା ବନ୍ଦନ | । ହସ୍ତରୁ ଫେଡ଼ିଲା ରାଜନ | ॥ |
| ତହୁଁ ସେ ବଣିକେ ତକ୍ଷଣ | । ରାଜାଙ୍କୁ କଲେ ନିବେଦନ | ॥ |
| ପୂର୍ବର କଥା ମନେ ହେଲା | । ଭୟରେ କିଛି ନ ସ୍ଫୁରିଲା | ॥ |
| ବିକଳେ ବଣିକଙ୍କୁ ଚୃହିଁ | । ସଧୀରେ କହେ ନରସାଇଁ | ।୪୬ । |
| ଦୈବ ଯୋଗରେ ତୁମ୍ଭେମାନେ | । ଦୁଃଖ ପାଇଲ ଏହିସ୍ଥାନେ | ॥ |
| ଆଉ ନ କର ଭୟ ମନେ | । ଯା ଥିଲା ତୁମ୍ଭର କରମେ | ॥ |
| ମୁକ୍ତ କରିଣ ଦୁଇଜଣ | । ରାଜା ବୋଧିଲେ ତାଙ୍କ ମନ | ॥ |
| କ୍ଷୌର କର୍ମାଦି ସର୍ବସାର | । ଭୋଜନେ ତୋଷ ଦଣ୍ଡଧାରୀ | ।୪୭। |
| ଏଥିଉତ୍ତାରେ ନୃପ ତାର | । ଅଣାଇ ସ୍ୱର୍ଣ୍ଣ ଅଳଙ୍କାର | ॥ |
| ବେଶ ଭୂଷଣ କରାଇଣ | । ବୋଧିଲେ ଦି ଜଣଙ୍କ ମନ | ॥ |
| ବଣିକେ ହେଲେ ତୋଷମନ | । ପାଇଣ ରତ୍ନାଦି ଭୂଷଣ | । ୪୮ । |

ପୂର୍ବମାତଂ ଚ ଯଦ୍ଦ୍ରବ୍ୟଂ ଦ୍ୱିଗୁଣୀ କୃତ୍ୟ ଦତ୍ତବାନ୍ ।
ପ୍ରୋବାଚ ତୌ ତତୋଃ ରାଜା ଗଚ୍ଛତେନ୍ତୌ ଦ୍ୱୌ ନଜାଶ୍ରମଂ ।
ରାଜାନଂ ପ୍ରଣିପତ୍ୟାହ ଗନ୍ତବ୍ୟଂ ତତ୍ପ୍ରସାଦତଃ । ୪୯ ।
ଯାହା ତୁ କୃତବାନ୍ ସାଧୁ ର୍ମଙ୍ଗଳାୟନପୂର୍ବକଂ ।
ବ୍ରାହ୍ମଣାୟ ଧନଂ ଦତ୍ତ୍ୱା ସମୟେ ନଗରଂ ସଯୌଃ । ୫୦ ।
ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ ବ୍ରତ ପୂଜା
କଥାୟାଂ ଶ୍ରୀ ଉଲ୍‌କାମୁଖ ରାଜା ଉପାଖ୍ୟାନେ ନାମ
ପଞ୍ଚମୋଽଧ୍ୟାୟଃ ।

ପୁଣିହିଁ ରାଜା ତୋଷ ମନେ । ବଣିକମାନଙ୍କୁ ତକ୍ଷଣେ
ପୂର୍ବେ ଯେ ଧନ ନେଇଥିଲ । ଦ୍ୱିଗୁଣ ଫେରାଇଣ ଦେଲ ॥
ସ୍ୱଗୃହେ ଯିବା ପାଇଁ ପୁଣି । ଆଦେଶ ଦ୍ୟନ୍ତେ ନୃପମଣି ॥
ତହୁଁ ବଣିକ ଦୁଇଜଣ । ରାଜାଙ୍କୁ କଲେକ ପ୍ରଣାମ ॥
ଅନେକ ବିନୟ ବଚନେ । ରାଜାଙ୍କୁ କହ୍ନି ଧନଗଣେ ॥
ଗୃହକୁ ଯିବାପାଇଁ ପୁଣି । ସେଠାରୁ ମାଗିଣ ମେଲାଣି । ୪୯ ।
ଆନନ୍ଦେ ଯାହା ପାଇଁ ମନ । ଜାମାତା ସହ ମହାଜନ ॥
ବିଧାନୁସାରେ ଦୁଇଜଣ । କଲେ ଯେ ମଙ୍ଗଳ ଆୟନ ॥
ବ୍ରାହ୍ମଣେ ଧନ ଦାନ ଦେଇ । ସ୍ୱଚ୍ଛନ୍ଦେ ସେ ବଣିକ ଦୁଇ ॥
ସେଠାରୁ ଗୃହକୁ ଚଳିଲେ । ପରମ ସନ୍ତୋଷହୋଇଲେ । ୫୦ ।
ଆହେ ସକଳ ଭକ୍ତଜନ । ଶ୍ରୀହରି ନାମ କର ଗାନ ॥
ଉଲ୍‌କାମୁଖର ଉପାଖ୍ୟାନ । ପଞ୍ଚମେ ଅଧ୍ୟାୟ ସମ୍ପୂର୍ଣ୍ଣ ॥
ଶ୍ରୀ ସତ୍ୟଦେବ ପଦାମ୍ବୁଜେ । ମେହେର ନାରାୟଣ ଭଜେ ॥
କହଇ ମନୋହର ସୁତ । ଭାଷ୍ୟ ପ୍ରବନ୍ଧେ ସତ୍ୟବ୍ରତ । ୦ ।

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ ବ୍ରତ ପୂଜା
କଥାୟାଂ ଉଲ୍‌କାମୁଖ ରାଜା ଉପାଖ୍ୟାନେ ନାମ ପଞ୍ଚମୋଽଧ୍ୟାୟଃ ।



## ଷଷ୍ଠ ଅଧ୍ୟାୟ ।
## ଅଥ ବୈଶ୍ୟ ସାଧୁ ରୁପାଖ୍ୟାନଂ ।

ସୂତ ଉବାଚ ।

କସ୍ମିଙ୍ଶ୍ଚିଦ୍‌ ଗତେ ସାଧୌ ସତ୍ୟନାରାୟଣପ୍ରଭୁଂ ।
ଜିଜ୍ଞାସା କୃତବାନ୍ ସାଧୌକିମସ୍ତି ତରଣୌ ତବ । ୧ ।
ତତୋ ମହାଜନୋ ମତ୍ତୋ ହେଳୟୈବ ଵହସ୍ୟ ଚ ।
କଥଂ ପୃଚ୍ଛସି ଭୋ ଦଣ୍ଡିନ୍ ମୁଦ୍ରାଂ କଂ ନେତୁମିଚ୍ଛସି । ୨ ।
ଲତା ପତ୍ରାଦିକଂ ଚୈବ୍ୟ ବର୍ତ୍ତତେ ତରଣୌ ମମ ।
ନଷ୍ଠୁର ତଦ୍‌ବଚଃ ଶ୍ରୁତ୍ୱା ସତ୍ୟଭବତ୍ତୁ ତେ ବଚଃ । ୩ ।

---

## ଷଷ୍ଠ ଅଧ୍ୟାୟ
## ବୈଶ୍ୟ ସାଧୁ ଉପାଖ୍ୟାନ

ଶ୍ରୀ ସୂତ ଉବାଚ ।

କହନ୍ତି ସୂତ ମହାମୁନ । ଶୁଣ ଶୌନକ ମହାଜ୍ଞାନ ॥
କନ୍ତୁହିଁ ଦୂରଯାନ୍ତେ ସାଧୁ । ତା ମନ ବୁଝିବାକୁ ପ୍ରଭୁ ॥
ଦଣ୍ଡି ସ୍ୱରୂପେ ନାରାୟଣ । ପଥେ ଭେଟିଲେ ମହାଜନ ॥
ତାହାକୁ ଦେଖି ଦଣ୍ଡବର । ପୁଚ୍ଛନ୍ତି ହୋଇ ତତପର ॥
ହେ ସାଧୁ ନୌକାରେ ତୋକସ । ଅଛଇ କର ତୁ ପ୍ରକାଶ । ୧ ।
ତା ଶୁଣି ମହାଜନ ତହିଁ । କହଇ ଧନ ଗର୍ବ ହୋଇ ॥
ହେ ଦଣ୍ଡି ତୁମ୍ଭେ କାହିଁପାଇଁ । ପଚ୍ଛରୁ ଅଛ ଭରା ହୋଇ ॥
ତୁମ୍ଭେ କ ମନରେ ଭାବଛ । ଟଙ୍କା ନେବାକୁ ମନେ ଇଛ । ୨ ।
ନୌକାରେ ନାହିଁ କିଛି ବସ୍ତୁ । ଲତା ପତ୍ରରେ ଯେ ପୂରିତ ॥
ନେବା ପାଇଁ ନ ଇଛା କର । କହିଲ ଆହେ ଦଣ୍ଡିବର ॥
ସାଧୁର ନଷ୍ଠୁର ବଚନ । ଶୁଣି ସମ୍ବୋଧେ ନାରାୟଣ ॥
କହନ୍ତି ଶୁଣ ହେ ସାଧୁତ । ତୋର ବଚନ ହେଉ ସତ୍ୟ । ୩ ।

ଏବଂ ମୁକ୍ତ୍ୱା ଗତଃ ଶୀଘ୍ରଂ ଦଣ୍ଡୀ ତସ୍ୟ ସମୀପତଃ ।
କୀୟଦ୍ଦୂରଂ ତତୋ ଗତ୍ୱା ସ୍ଥିତଂ ସିନ୍ଧୁ ସମୀପତଃ । ୪ ।

ଗତେ ଦଣ୍ଡିନି ସାଧୁଶ୍ଚ କୃତନିତ୍ୟକ୍ରିୟସ୍ତଦା ।
ଉତ୍ଥିତ୍ୱା ତରଣିଂ ଦୃଷ୍ଟ୍ୱା ବିସ୍ମୟଂ ପରମଂ ଯଯୌ । ୫ ।

ଦୃଷ୍ଟ୍ୱା ଲତାଦିକଂ ତନ୍ତ୍ରଂ ମୂର୍ଚ୍ଛିତୋ ନ୍ୟପତଦ୍ଭୁବି ।
ଲବ୍ଧସଂଜ୍ଞୋ ବଣିକ୍ପୁତ୍ରୋ ଭୃଶଂ ଚିନ୍ତାପରୋଽଭବତ୍ । ୬ ।

ତଦାତୁ ଦୁହିତୁଃ କାନ୍ତ ବଚନଂ ଚେଦମବ୍ରବୀତ୍ ।
କିମର୍ଥଂ କ୍ରିୟତେ ଶୋକଃ ଶାପୋ ଦତ୍ତଶ୍ଚ ଦଣ୍ଡିନା । ୭ ।

---

ଏତେ କହିଣ ଦଣ୍ଡିବର । ସେଠାରୁ ଗଲେ ତତପର ॥
କିଛିହିଁ ଦୂରକୁ ଯାଇଣ । ରହିଲେ ସମୁଦ୍ର ତଟେଣ ॥
ସାଧୁ ଯେ ବୋଇତ ଘେନିଣ । ସଧୀରେ କଲା ଆଗମନ ॥
ସମୁଦ୍ର ତଟରେ ମିଳିଲା । ସେଠାରେ ନାବ ରୁହାଇଲା ।୪।
ଦଣ୍ଡିଙ୍କ ଯାନ୍ତେ ମହାଜନ । କଲା ଆପଣା ନିତ୍ୟକର୍ମ ॥
ଉଠିଣ ନାବକୁ ଦେଖିଲା । ପରମ ଅଶ୍ଚର୍ଯ୍ୟ ହୋଇଲା ।୫।
ଲତା ପତ୍ରରେ ନୌକା ପୂର୍ଣ୍ଣ । ଦେଖିଲା ନାହିଁ କିଛି ଧନ ॥
ବିସ୍ମୟେ ଚିନ୍ତାରେ ବୁଡ଼ିଲା । ମୂର୍ଚ୍ଛିତ ହୋଇଣ ପଡ଼ିଲା ॥
ଚେତା ପାଇଣ ସାଧୁ ପୁତ୍ର । ଚିନ୍ତାରେ ହୋଇଲା ଦୁଃଖିତ ।୬।
ଏପରି ଦେଖି ତା ଜୁଆଇଁ । ସଚେତ କରିଣ କହଇ ॥
ଦଣ୍ଡୀ କୋପରେ ତୁମ୍ଭ ବିତ୍ତ । ଲୁପତ ହୋଇଛି ସମସ୍ତ ॥
ଦଣ୍ଡୀ ପଚାରିବାରୁ ତୁମ୍ଭେ । କହିଲ ଉପହାସ ଭାବେ ॥
ଏବେ କିପାଇଁ ଶୋକ କର । ଶାପ ବିହିଲେ ଦଣ୍ଡିବର ।୭।

ଶକ୍ୟତେ ତେନ ସର୍ବଂ ହି କର୍ତ୍ତୁଂ ଗୃହ ନ ସଂଶୟ ।
ଅତ ସ୍ତ୍ରକରଣଂ ଯାଂତମା ବାଞ୍ଛିତାର୍ଥୋ ଭବିଷ୍ୟତି । ୮ ।
ଜାମାତୁଷ୍ଟ ବଚଃ ଶ୍ରୁତ୍ୱା ତଥ୍ରକାର୍ଣଂ ଗତସ୍ତଦା ।
ଦୃଷ୍ଟ୍ୱାଚ ଦଣ୍ଡିନଂ ଭକ୍ତ୍ୟା ନତ୍ୱା ପ୍ରୋବାଚ ସାଦରଂ । ୯ ।
ମୟା ଦୁରାତ୍ମନା ଦେବ ମୂଢ଼େନ ତବ ମାୟୟା ।
ଯଦୁକ୍ତଂ ତଦ୍‌ବଚଶ୍ଚ ନାଥ ଦୁଷ୍ଟଂ ମୋକ୍ଷନ୍ତୁ ମର୍ହସ । ୧୦ ।
ଯତଃ ପରହିତା ସର୍ବେ କ୍ଷମାଶୀଳା ହି ସାଧବଃ ।
ପୁନଃ ପୁନସ୍ତତୋ ନତ୍ୱା ରୁରୋଦ ଶୋକବହ୍ୱଳଃ । ୧୧ ।

ଯେହୁ ଅଟନ୍ତି ବଡ଼ ଦେବ । କର ପାରନ୍ତି ଜାଣ ସବ ॥
ଏଥି ସଂଶୟ ନାହିଁ ଆନ । କହୁଛି ମୋ ବଚନ ଘେନ ॥
ଯାଇଣ ଦଣ୍ଡିଙ୍କ ପାଦରେ । ଶରଣ ପଶନ୍ତୁ ବେଗରେ ॥
ବାଞ୍ଛିତ କାର୍ଯ୍ୟ ସିଦ୍ଧହେବ । ମନରେ କଛିହିଁ ନ ଭାବ ॥
ଏପର ଜାମାତା ବଚନ । ଶୁଣି ସେଠାରୁ ମହାଜନ ॥
କଛିହିଁ ଦୂରକୁ ଯାଇଣ । ଭେଟିଲ ଦଣ୍ଡୀ ନାରାୟଣ ॥
ତକ୍ଷଣେ ପାଦରେ ପଡ଼ିଲ । ବହୁତ ବିନୟ ହୋଇଲ ।୯ ।
ମୁଁ ପାପୀ ବଡ଼ ଦୁରାଚାର । କାହୁଁ ଜାଣିବ ନର ଛାର ॥
ନ ଜାଣି ଗରବ ପଣରେ । ପଡ଼ିଲ ତୁମ୍ଭର ମାୟାରେ ॥
ଯେବେ ମୋହର ଦୋଷ ଥିଲେ । କ୍ଷମା କରନ୍ତୁ ପ୍ରଭୁ ଭଲେ । ୧୦ ।
ଯତେ ପର ଉପକାରେ । ସର୍ବଦା ଥାଆନ୍ତି ସଂସାରେ ॥
ଦୟାଳୁ ସ୍ୱଭାବ ତାହାଙ୍କ । ଅଟଇ ସବୁହିଁ ନୟାକ ॥
ଏମନ୍ତ କହି ମହାଜନ । ଶୋକରେ କଲାକ ରୋଦନ ॥
ପୁଣି ଚରଣେ ବାରମ୍ବାର । ପଡ଼ିଣ କଲା ନମସ୍କାର । ୧୧ ।

ଦଣ୍ଡୀ ଉବାଚ ।

ତାମୁବାଚ ତତୋ ଦଣ୍ଡୀ ବଳପନ୍ତଂ ବଲୋକ୍ୟ ଚ ।
ମାଶେଦ୍ଧଃ ଶୃଣୁଷ୍ବ ବାକ୍ୟଂ ମମ ପୂଜା ବହିର୍ମୁଖଃ । ୧୨ ।
ମାମବଜ୍ଞାୟ ଦୁର୍ବୁଦ୍ଧେ ଲବ୍ଧଂ ଦୁଃଖଂ ମୁହୁର୍ମୁହୁ ।
ତଚ୍ଛ୍ରୁତ୍ବା ଭଗବଦ୍ ବାକ୍ୟଂ ସ୍ତୁତିକର୍ତ୍ତୁଂ ସମୁଦ୍ୟତଃ । ୧୩ ।

ସାଧୁରୁବାଚ ।

ତ୍ବନ୍ମାୟା ମୋହିତା ସର୍ବେ ବ୍ରହ୍ମାଦ୍ୟାସ୍ତ୍ରିଦିବୌକସଃ ।
ନ ଜାନନ୍ତି ଗୁଣଂ ରୂପଂ ତଦାଶ୍ଚର୍ଯ୍ୟମିଦଂ ପ୍ରଭୋ । ୧୪ ।

---

ଦଣ୍ଡୀ ଉବାଚ ।

ଧନର ବ୍ୟାକୁଳ ଦେଖିଣ । କହନ୍ତି ଦଣ୍ଡୀ ନାରାୟଣ ॥
ଆମ୍ଭଙ୍କୁ ନ ଚିହ୍ନିଣ ତୁହି । ଧନରେ ଅତି ଗର୍ବ ବହି ॥
ପୁଣିହିଁ କଲୁ ଉପହାସ । ତେଣୁ ପାଇଲୁ ଅପଯଶ ॥
ଆବର ପୂଜାକୁ ମୋହର । ବମୁଖ କଲୁ ଧନେଶ୍ବର ॥
ତେଣୁ ଆମ୍ଭର କୋପ ହେଲା । ତୋତେ ଯେ ବପତ୍ତି ପଡ଼ିଲା । ୧୨।
ତା ଶୁଣି ସତ୍ୟଦେବ ଗୀର । ବନୟେ କହେ ଧନେଶ୍ବର ॥
ହେ ପ୍ରଭୁ ସତ୍ୟନାରାୟଣ । ମୁହିଁ ଅଟଇ ମୂର୍ଖ ଜନ ॥
ମୁହିଁ ପାମର ଦୁରାଚାର । ଦୁର୍ବୁଦ୍ଧି ପଣରେ ମୋହର ॥
ଅନେକ ଦୁଃଖ ମୁଁ ପାଇଲି । ଚକ୍ଷୁ ଥାଇଣ ଅନ୍ଧ ହେଲି ॥
ଯହୁଁ ଏପର ଧନପତି । ପ୍ରଭୁଙ୍କୁ ଆରମ୍ଭିଲା ସ୍ତୁତି । ୧୩ ।

ସାଧୁ ଉବାଚ ।

ହେ ସ୍ବାମୀ ତୁମ୍ଭର ମାୟାରେ । ବ୍ରହ୍ମାଦି ସକଳ ଅମରେ ॥
ମୋହିତ ହୁଅନ୍ତି ସକଳେ । ନ ପାନ୍ତି ରୂପ ଗୁଣ ତଳେ ॥
ପୁଣିହିଁ ଆଶ୍ଚର୍ଯ୍ୟ ହୁଅନ୍ତି । ମାୟାରେ ପଡ଼ି ବଶ ହୋନ୍ତି । ୧୪ ।

ମୂଢ଼ତ୍ୱାତ୍ଵଂ ତ୍ଵାଂ କଥଂ ଜାନେ ମୋହିତସ୍ତବ ମାୟୟା ।
ପ୍ରସୀଦ ପୂଜୟିଷ୍ୟାମି ଯଥା ବିଭବବିସ୍ତରଂ । ୧୫ ।
ପୁରଂ ବିତ୍ତଂ ଚ ସୁହୃଦଂ ପାହି ମାଂ ଶରଣାଗତଂ ।
ଶ୍ରୁତ୍ୱା ଭକ୍ତିଯୁକ୍ତ ବାକ୍ୟଂ ପରିତୁଷ୍ଟୋ ଜନାର୍ଦ୍ଦନେ ।୧୬ ।
ବରଂ ଚ ବାଞ୍ଛିତଂ ଦତ୍ତ୍ୱା ତତ୍ରୈବାନ୍ତର ଧୀୟତ ।
ତତୋଽସୌ ନାବ ମାରୁହ୍ୟ ଦୃଷ୍ଟ୍ୱା ରତ୍ନାଦି ପୂରିତଂ । ୧୭ ।
କୃପୟା ସତ୍ୟଦେବସ୍ୟ ସିଦ୍ଧିଂ ସର୍ବଂ ଚ ବାଞ୍ଛିତଂ ।
ଇତ୍ୟୁକ୍ତ୍ୱା ସ୍ୱଜନୈ ସାର୍ଦ୍ଧଂ ପୂଜାଂ କୃତ୍ୱା ଯଥାବିଧି । ୧୮ ।

---

ମୁଁ ମୂଢ଼ ଜାଣି ନ ପାରଇ । ତୁମ୍ଭ ମାୟାରେ ମୋହ ହୋଇ ॥
ଯଥା ବିଧିରେ ପୂଜା ତୁମ୍ଭ । କରିବି ନଷ୍ଟେ ଆଦେ ଦେବ । ୨୫ ।
ସୋଦର ଦାରା ସୁତ ଧନ । ସର୍ବ କୁଶଳେ ଥାନ୍ତୁ ପୁଣ ॥
ଏବେ ମୁଁ ପଶିଲି ଶରଣ । ରକ୍ଷାକର ହେ ନାରାୟଣ ॥
ଏପରି ସାଧୁ ଭକ୍ତିଭାବେ । ଜଣାଣ କଲା ପ୍ରଭୁପାଦେ ॥
ତାହାର ଭକ୍ତିଭାବ ଦେଖି । ସନ୍ତୋଷ ହୋଇ ପଦ୍ମଅକ୍ଷି । ୧୬ ।
ବୋଲନ୍ତି ଶୁଣ ହେ ସାଧୁତ । ଭୂଲିବୁ ନାହିଁ ଆମ୍ଭ ବ୍ରତ ॥
ଏବେ ତୋହର ପୂର୍ବ ଧନ । ସର୍ବ ପାଇବୁ ମହାଜନ ॥
ଏମନ୍ତ ବର ତାକୁ ଦେଇ । ଅନ୍ତର ହେଲେ ହରିଗୋସାଇଁ ॥
ବର ପାଇଣ ସେ ସାଧୁତ । ନାବକୁ ଗୁହାଁଣ ହେଲାତ ॥
ସକଳ ଧନ ପୂର୍ବ ପରି । ଦେଖି ଆନନ୍ଦ ହେଲା ହରି । ୧୭ ।
ସତ୍ୟଦେବଙ୍କ କୃପା ହେଲା । ସକଳ କାର୍ଯ୍ୟ ସିଦ୍ଧି ହେଲା ॥
ବଣିକ ସ୍ୱଜନ ସଙ୍ଗରେ । ଘେନିଣ ପୂଜା ଉପଚାର ॥
ଶ୍ରୀ ସତ୍ୟନାରାୟଣ ବ୍ରତ । ବିଧିରେ କରି ସମାପତ । ୧୮ ।

ହର୍ଷେଣ ସୋଽଭବତ୍ ପୂର୍ଣ୍ଣ ସତ୍ୟଦେବପ୍ରସାଦତଃ ।
ନାବ ମାରୁହ୍ୟ ବେଗେନ ସ୍ୱଦେଶ ମାଗମତ୍ତତଃ । ୧୯ ।
ତତୋ ଜାମାତାରଂ ପ୍ରାହ ପଶ୍ୟ ରତ୍ନପୁରୀଂ ମମଃ ।
ଦୂତଂ ଚ ପ୍ରେଷୟାମାସ ନିଜ ବିତ୍ତସ୍ୟ ରକ୍ଷକଂ । ୨୦ ।
ତତୋଽସୌ ନଗରଂ ଗତ୍ୱା ସାଧୁଭାର୍ଯ୍ୟା ବ୍ୟାଲୋକୟତ୍ ।
ଉବାଚ ବାଞ୍ଛିତଂ ବାକ୍ୟଂ ନତ୍ୱା ବଦ୍ଧାଞ୍ଜଳିସ୍ତଦା । ୨୧ ।
ନିକଟେ ନଗରସ୍ୟୈବ ଜାମାତା ସହିତୋ ବଣିକ୍ ।
ଆଗତଃ ବନ୍ଧୁବର୍ଗୈଶ୍ଚ ଧନୈର୍ବହୁବିଧୈସ୍ତଥା । ୨୨ ।
ଶ୍ରୁତ୍ୱା ଦୂତମୁଖାଦ୍ ବାକ୍ୟଂ ମହାହର୍ଷ ଯୁତା ସତୀ ।
ସତ୍ୟପୂଜାଂ ତଦାକୃତ୍ୱା ପ୍ରୋବାଚ ତନୁଜାଂ ପ୍ରତି । ୨୩ ।

ସତ୍ୟଙ୍କ ପ୍ରସାଦୁଁ ସାଧୁତ । ଧନ ପାଇଣ ତୋଷ ଚିତ୍ତ ॥
ଆନନ୍ଦେ ଯତ୍ନରେ ନଉକା । ନେବାକୁ ସଜାଡିଲା ଏକା ॥
ନିଜ ଗ୍ରାମର ଅଭିମୁଖେ । ତରଣି ଚଳାଇଲା ସୁଖେ । ୧୯ ।
କତୁହଁ ଦୂର ତହୁଁ ଯାଇ । ସାଧୁ ସେ ଜ୍ୱାଇଁକୁ କହଇ ॥
ଦେଖ ଦିଶୁଛି ରତ୍ନପୁର । ପ୍ରତ୍ୟକ୍ଷେ ଆମ୍ଭର ନଗର ॥
ବେଗେ ପଠାଅ ଜଣେ ଦୂତ । ଗୃହରେ କହୁ ମୋ ଆଗତ ॥
ତା ଶୁଣି ଜାମାତା ସତ୍ୱର । ଗୃହେ ପେଷିଲା ଜଣେ ଚର । ୨୦ ।
ଆଜ୍ଞା ପାଇଣ ଦୂତ ଗଲା । ଧନର ନଗ୍ରେ ପ୍ରବେଶିଲା ॥
ବଣିକ ଭାର୍ଯ୍ୟାକୁ ଦେଖିଲା । ବାଞ୍ଛିତ ଫଳାଦି କହିଲା । ୨୧ ।
ଜାମାତା ଆଦି ତୁମ୍ଭ କାନ୍ତ । ନଗ୍ର ନିକଟେ ଉପଗତ ॥
ବନ୍ଧୁଗଣଙ୍କୁ ସଙ୍ଗେ ଘେନି । ଆଣନ୍ତି ବହୁଧନ ପୁଣି ॥
ବିଳମ୍ବ ନ କରଣ ଏବେ । ଚାଲ ପାଛୁଟିଆଣ ବେଗେ । ୨୨ ।
ଚରକର ମୁଖରୁ ଶୁଣିଣ । ଲୀଳା ସେ ଆନନ୍ଦ ହୋଇଣ ॥
ଆପଣା ମନରେ ଭାବିଣ । ପୂଜିଲା ସତ୍ୟ ନାରାୟଣ ॥

ବ୍ରଜାମି ଶୀଘ୍ରମାଗନ୍ତୁ ସାଧୁ ସନ୍ଦର୍ଶନାୟ ଚ ।
ଇତି ମାତୃବଚଃ ଶ୍ରୁତ୍ୱା କୃତଂ ତାବତ୍ସମାପୟେତ୍ ।୨୪।

ପ୍ରସାଦଂ ଚ ପରିତ୍ୟଜ୍ୟ ଗତା ସାପି ପତିଂ ପ୍ରତି ।
ତେନରୁଷ୍ଟଃ ସତ୍ୟଦେବୋ ଭର୍ତ୍ତାରଂ ତରଣିଃ ତଥା ।୨୫।

ସଂହୃତ୍ୟ ଚ ଜନୈଃ ସାର୍ଦ୍ଧଂ ଜଳେ ତସ୍ମିନ୍ ନିମଜ୍ଜୟତ୍ ।
ତତଃ କଳାବତୀ ସାନା ହ୍ୟନାଲୋକ୍ୟ ନିଜଂ ପତିଂ ।୨୬।

ଶୋକେନ ମହତା ତତ୍ର ରୁଦନ୍ତି ଚ୍ୟପତଦ୍ଭୁବି ।
ଦୃଷ୍ଟ୍ୱା ତଥା ବଧାଂ କନ୍ୟାଂ ନ ଦୃଷ୍ଟ୍ୱା ତତ୍ପତିଂ ତଥାଂ ।୨୭।

---

ପ୍ରସାଦ ହରଷେ ଖାଇଲା । ପତି ଦର୍ଶନେ ଇଚ୍ଛା କଲା ॥
ସୁବେଶ ହୋଇ କଳାବତୀ । ଝିଅକୁ କହଇ ଭାରତୀ ।୨୩।
ତୋ ପିତା ଜାମାତା ସହିତେ । ବାଣିଜ୍ୟ ଆସିଲେଣି ଏଥେ ॥
ଯାଉଛୁ ତାଙ୍କ ପାଶେ ଏବେ । ଅବିଳମ୍ବେ ତୁ ଆସ ତବେ ॥
ମାତା ବାକ୍ୟରେ କଳାବତୀ । ଚଞ୍ଚଳ ହୋଇଣ ତୁରିତ ॥
ତକ୍ଷଣେ ମନରେ ଚିନ୍ତିଲା । ସତ୍ୟପୀରଙ୍କୁ ପୂଜା କଲା ।୨୪।
ପ୍ରସାଦ ଭକ୍ଷଣ ନ କଲା । ପତି ଦର୍ଶନେ ଗଲା ଚଳା ॥
ତା ଜାଣି ସତ୍ୟନାରାୟଣ । କୋପ ବହିଲେ ମାନସେଣ ॥
ସାଧୁର ଜୁଆଇଁ ସହିତ । ତରଣି ଆଦି ଯେତେ ବିତ୍ତ ।୨୫।
ସମସ୍ତ ସମୁଦ୍ର ଜଳରେ । ବୁଡ଼ାଇ ଦେଲେ ଧାଡକାରେ ॥
କାହାର ଗୋଚର ନୋହିଲା । ସକଳ ଅଦୃଶ୍ୟ ହୋଇଲା ॥
ଯେ କଳାବତୀ ପତି ମୁଖ । ନଦେଖି ମନେ କଲା ଶୋକ ।୨୬।
କହୁତ ବ୍ୟାକୁଳେ କାନ୍ଦିଲା । ମୂର୍ଚ୍ଛିତ ହୋଇଣ ପଡ଼ିଲା ॥
ତରଣି ବୁଡ଼ିବାର ଦେଖି । ହେଲା ଯେ ମନେ ଅତି ଦୁଃଖୀ ।୨୭।

ଖିତେନ ମନସା ପ୍ରାହ କମାଶ୍ଚର୍ଯ୍ୟମିଦଂ ତ୍ୱିତି ।
ଚିନ୍ତ୍ୟା ବ୍ୟାକୁଳାଃ ସର୍ବେ ବୁଭୂବୁ ର୍ବାହକାସ୍ତରେ । ୨୮ ।
ତତୋ ଲୀଳାବତୀ ସାଧ୍ୱୀ ଦୃଷ୍ଟ୍ୱା ତଦ୍ବିହ୍ୱଳା ସତୀ ।
ବିହ୍ୱଳା ଚୃତି ଦୁଃଖେନ ଭର୍ତ୍ତାରଂ ଚେଦମବ୍ରବୀତ୍ । ୨୯ ।
ଇଦାନୀଂ ନୌକୟା ସାର୍ଦ୍ଧଂ କଥାଂ ସୋଽଭୂଦଲକ୍ଷିତଃ ।
ନ ଜାନେ କେନ ଦେବେନ ହେଳୟା ଚୃପହାରିତଃ । ୩୦ ।
ସତ୍ୟ ଦେବସ୍ୟ ମହାତ୍ମ୍ୟଂ ଜ୍ଞାତୁଂ ବା କେନ ଶକ୍ୟତେ ।
ଇତ୍ୟୁକ୍ତ୍ୱା ବିହ୍ୱଳା ଚୃଥ ହରସ୍ତୈଃ ସ୍ୱଜନୈଃ ସହ । ୩୧ ।
ତତୋ ଲୀଳାବତୀ କନ୍ୟାଂ କ୍ରୋଡେ କୃତ୍ୱା ରୁରୋଦ ହ ।
ତତଃ କଳାବତୀକନ୍ୟା ନଷ୍ଟେ ସ୍ୱାମିନି ଦୁଃଖିତା । ୩୨ ।

---

ସାଧୁ ଯେ ଭୟରେ ଭାବିଲା । ଏ କିସ ଘଟଣା ବୋଇଲା ॥
ତହିଁ ନାବିକେ ଥିଲେ ଯେତେ । ତାଟକା ହୋଇଲେ ସମସ୍ତେ ॥
ବହୁତ ବ୍ୟାକୁଳ ହୋଇଲେ । ଚିନ୍ତାର୍ଣ୍ଣବରେ ମଗ୍ନ ହେଲେ ।୨୮।
ଏ ସବୁ ଦେଖି ଲୀଳାବତୀ । ମନେ ବ୍ୟାକୁଳ ହୋଇ ଅତି ॥
ଅତ୍ୟନ୍ତ ହୋଇ ଶୋକାତୁର । ସ୍ୱାମୀକୁ କହଇ ଯେ ଗୀର । ୨୯ ।
ଏଠାରେ ଜାମାତା ନାବରେ । ଧନ ସହିତେ ରହିଥିଲେ ॥
କେଣିକି ଅବା ଉଡ଼ାଇଲେ । କିବା ଜଳରେ ଭାସିଗଲେ ॥
କେଉଁ ଦେବତା କୂଟ କଲା । ସମସ୍ତ ଅଦୃଶ୍ୟ ହୋଇଲା ।୩୦।
ଯେ ହରି ସତ୍ୟଦେବ ଧୀର । ତାଙ୍କର ମାୟା ଅଗୋଚର ॥
ତାହାଙ୍କ ମାହାତ୍ମ୍ୟ ବା କେହି । ଜାଣିବା ଶକତି ନୁହଇ ॥
ବଣିକ ଏମନ୍ତ କ ଗୁହିଁ । ସ୍ୱଜନ ସଙ୍ଗତରେ ରହି ॥
ବହୁତ ରୋଦନ ସେ କଲା । ମନରେ ବହୁତ ଭାବିଲା । ୩୧ ।
ତେଣେ ସେ ଲୀଳାବତୀ ସତୀ । କୋଳରେ ଘେନି ତା ଦୁହିତ ॥
ବସି କାନ୍ଦଇ ଦୁଃଖିତରେ । ଜାମାତା ସୁମରି ମନରେ ॥
ସାଧୁଙ୍କ ସୁତା କଳାବତୀ । ପତି ନିଧନେ ଦୁଃଖମତି । ୩୨ ।

ଗୃହୀତ୍ୱା ପାଦୁକା ତସ୍ୟ ସହ ଗନ୍ତୁଂ ମନୋ ଦଧେ ।
କନ୍ୟାପ୍ୟା ଶ୍ୱଶୁରଂ ଦୃଷ୍ଟ୍ୱା ସଭର୍ତୃକଃ ସନ୍ନତୋ ବଣିକ୍ । ୩୩ ।
ଅତିଶୋକେନ ସନ୍ତପ୍ତ ଶ୍ଚିନ୍ତୟା ମାସଧର୍ମବତ୍ ।
ହୃତୋ ବା ସତ୍ୟଦେବେନ ଭ୍ରାନ୍ତୋଽହଂ ତସ୍ୟ ମାୟୟା । ୩୪ ।
ସତ୍ୟପୂଜାଂ କରିଷ୍ୟାମି ତଥା ବିଭବବିସ୍ତରୈଃ ।
ଇତି ସର୍ବାନ ସମାହୂୟ କଥିତଂ ଚ ମନୋରଥଂ । ୩୫ ॥
ନତ୍ୱା ଚ ଦଣ୍ଡବଦ୍‌ଭୂମୌ ସତ୍ୟଦେବଂ ପୁନଃପୁନଃ ।
ତତସ୍ତୁଷ୍ଟଃ ସତ୍ୟଦେବୋ ଗଗନାଦ୍ ବଣିକଂ ପ୍ରତି । ୩୬ ।
ଉବାଚ ବଚନଂ ଚେଦଂ ନୈବେଦ୍ୟମବମନ୍ୟସେ ।
ଆଗତା ସ୍ୱାମିନଂ ଦ୍ରଷ୍ଟୁ ମତୋଽଦୃଶ୍ୟୋଽଭବଦ୍ପତିଃ । ୩୭ ।

---

ପତିର ପାଦୁକା ଘେନଣ । ଜଳେ ଝାସିବା କଲ୍ପମନ ॥
ଝିଅର ଏହି ଦୁଃଖ ଦେଖି । ଧନ ସହିତେ ଭାର୍ଯ୍ୟା ଦୁଃଖି ।୩୩।
ବିଳାପ କଲେକ ବହୁତ । ମନେ ଚିନ୍ତଣ ଧର୍ମବନ୍ତ ॥
ସେ ସତ୍ୟଦେବ ମାୟାବଳେ । ଏ ସବୁ ଘଟିଥିବ ଭଲେ ॥
ଏମନ୍ତ ବୋଲି ଲୀଳାବତୀ । ମନରେ ଚିନ୍ତାକଲ୍ଲ ଅତି । ୩୪ ।
ଜାଣି ପ୍ରଭୁଙ୍କୁ ଚିନ୍ତାକଲ୍ଲ । ମନରେ ବ୍ରତ ମନାସିଲ୍ଲ ॥
ନିଶ୍ଚୟ ସତ୍ୟଦେବ ବ୍ରତ । କରିବ କହୁଛୁ ମୁଁ ସତ୍ୟ ॥
ପୂଜାର ସାମଗ୍ରୀ ଖଞ୍ଜିଲ୍ଲ । ମନରେ କାମନା ସେ କଲ୍ଲ ॥
ସମସ୍ତ ଜନଙ୍କୁ ସେ କହି । ଜାମାତା ଉଦ୍ଧାରିବା ପାଇଁ । ୩୫।
ଏତେ କହିଣ ଲୀଳାବତୀ । ସତ୍ୟଦେବଙ୍କୁ କଲ୍ଲସ୍ତୁତି ॥
ସେ ହରି ସତ୍ୟ ନାରାୟଣ । ଜାଣିଣ ଭକତ କଷଣ ॥
ବଣିକ ଭାର୍ଯ୍ୟା ସ୍ତୁତି ଶୁଣି । ଆନନ୍ଦ ହେଲେ କମ୍ବୁ ପାଣି ।୩୬।
ଭକ୍ତବତ୍ସଳ ସତ୍ୟପୀର । ଶୁଣିଣ ସାଧୁ ଜାୟାଗୀର ॥
ଶୂନ୍ୟରେ କହନ୍ତି ଶ୍ରୀପତି । ଶୁଣ ଗୋ ବଣିକ ଯୁବତୀ ॥
ଯେ ଦୋଷଁ ଘଟିଲ୍ଲ ଏମାନ । କହୁଛୁ ସାବଧାନେ ଶୁଣ । ୩୭ ।

ଗୃହଂ ଗତ୍ୱା ପ୍ରସାଦଂ ଚ ଭୁକ୍ତ୍ୱା ଶ୍ରୁତ୍ୱା ମୃଯନ୍ତ ପୁନଃ ।
ଲବ୍ଧ ଭର୍ତ୍ତ୍ରୀ ସୁତା ସାଧ୍ୱୀ ଭବିଷ୍ୟତ ନ ସଂଶୟଃ । ୩୮ ।

ତତସ୍ତୁ ପ୍ରାଣାଦଂ ବାକ୍ୟଂ ଶ୍ରୁତ୍ୱା ଗଗନମଣ୍ଡଳାତ୍ ।
କ୍ଷିପ୍ରଂ ତଦାଗୃହଂ ଗତ୍ୱା ପ୍ରସାଦଂ ପ୍ରତିଗୃହ୍ୟ ଚ । ୩୯ ।

ଅପଶ୍ୟତ୍ ପୁନରାଗତ୍ୟ ପତିଂ ଚ ସ୍ୱଜନୈଃ ସହ ।
ତତଃ କଳାବତୀ ତୁଷ୍ଟା ଜଗାଦ ପିତରଂ ପ୍ରତି । ୪୦ ।

ଏହି ତାତ ଗୃହଂ ଗଚ୍ଛ ବିଳମ୍ବଂ କୁରୁଷେ କଥଂ ।
ତଚ୍ଛ୍ରୁତ୍ୱା କନ୍ୟକାବାକ୍ୟଂ ସନ୍ତୁଷ୍ଟଃସନ୍ ବଣିକ୍ ପତିଃ । ୪୧ ।

---

ତୋ ଝିଅ ପୂଜା ଶେଷ କଲା । ପ୍ରସାଦ ନ ଖାଇ ଅଇଲା ॥
ଅମାନ୍ୟ କଲା ସେ ପ୍ରସାଦ । ତେଣୁଟି ପଡ଼ିଲା ପ୍ରମାଦ ॥
ଏବେ ତୋ ଝିଅ ଗୃହେ ଯାଇ । ଆସୁ ପ୍ରସାଦ ବେଗେ ଖାଇ ॥
ତେବେ ଦେଖିବ ତାର ପତି । ନାହିଁ ସଂଶୟ କିଛି ଏଥି । ୩୮ ।
ଅନ୍ତରୀକ୍ଷରୁ ଏହି ବାଣୀ । ସେ କଳାବତୀ କର୍ଣ୍ଣେ ଶୁଣି ॥
ବେଗରେ ଗୃହକୁ ଚଳିଲା । ପ୍ରସାଦ ଭକ୍ଷିଣ ଅଇଲା ॥
ଫେରିଣ ଦେଖେ ସିନ୍ଧୁ ତଟରେ । ପତି ପଦାର୍ଥ ନାବ ପରେ ॥
ଘରର ଆଦି ବନ୍ଧୁଜନ । ଦେଖି ସନ୍ତୋଷ କଲା ମନ ॥
ଏଥୁଅନ୍ତରେ କଳାବତୀ । ପିତାକୁ କହଇ ଝଟତି । ୪୦ ।
ହେ ତାତ ଗୃହକୁ ବିଳମ୍ବ । ନ କର ହୋଇ ଯିବା ବେଗ ॥
ଝିଅର ବଚନ ଶୁଣିଣ । ବଣିକ ହେଲା ତୋଷମନ । ୪୧ ।

ପୂଜନଂ ସତ୍ୟଦେବସ୍ୟ କୃତ୍ୱା ଚ ବିଧି ପୂର୍ବକଂ ।
ଧନୈଶ୍ଚ ବନ୍ଧୁଭିଃସାର୍ଦ୍ଧଂ ଜଗାମ ନିଜ ମନ୍ଦିରଂ । ୪୨ ।
ମାସି ମସି ଚ ସଂକ୍ରାନ୍ତୌ ପୂଜା କୃତ୍ୱାତଥା ବିଧାଂ ।
ଇହଲୋକେ ସୁଖଂ ଭୁକ୍ତ୍ୱା ଚାନ୍ତେ ସତ୍ୟପୁରଂ ଯଯୌ । ୪୩ ।
ଅଥଃ ଚାନ୍ୟତ୍ ପ୍ରବକ୍ଷ୍ୟାମି ଶୃଣୁଧ୍ୱ ମୁନି ସତ୍ତମାଃ ।୪୪ ।

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ
ବ୍ରତ ପୂଜା କଥାୟାଂ ବୈଶ୍ୟ ସାଧୁ ଉପାଖ୍ୟାନେ
ନାମୋ ଷଷ୍ଠୋଽଧ୍ୟାୟଃ ।

ସତ୍ୟଦେବଙ୍କ ପୂଜା ପାଇଁ । ଖଞ୍ଜିଲା ପୂଜାଦ୍ରବ୍ୟ ଯାଇଁ ॥
ଯଥା ବିଧିରେ ପୂଜା କଲା । ପରମ ସନ୍ତୋଷ ଲଭିଲା ॥
ବନ୍ଧୁ ବାନ୍ଧବ ସଙ୍ଗେ ଘେନି । ଗୃହକୁ ଚଳିଲା ସେ ଧନି ॥
ଆପଣା ଗୃହେ ପ୍ରବେଶିଲା । ସକଳ ଦୁଃଖ ପାଶୋରିଲା । ୪୨ ।
ଏପରି ପ୍ରତିମାସେ ଥରେ । ସଂକ୍ରାନ୍ତି ଆଦି ପୂର୍ଣ୍ଣିମାରେ ॥
ସତ୍ୟପୀରଙ୍କ ପୂଜା ବ୍ରତ । କରନ୍ତି ଭକ୍ତିରେ ସାଧୁତ ॥
ସେ ବ୍ରତ ଫଳରେ ତାହାର । ସମ୍ପଦ ବଢିଲା ଅପାର ॥
ଜୀବତେ ସୁଖ ଭୋଗ କଲା । ଅନ୍ତେ ସେ ସତ୍ୟପୁର ଗଲା । ୪୩।
ଏ ଅନ୍ତେ ଶୁଣ ମୁନିଗଣ । କହିବା ଅପୂର୍ବ ଆଖ୍ୟାନ ॥
ଶ୍ରୀ ବୈଶ୍ୟ ସାଧୁ ଉପାଖ୍ୟାନ । ଷଷ୍ଠ ଅଧ୍ୟାୟ ସମାପନ । ୪୪ ।
ବୋଲ ଆନନ୍ଦେ ହରି ହରି । ହେବେ ତରିବ ଭବବାରି ।
ଶ୍ରୀ ସତ୍ୟ ନାରାୟଣ ବ୍ରତ । ଲେଖିଲା ମନୋହର ସୁତ ॥
ସେ ସତ୍ୟ ଚରଣାରବିନ୍ଦେ । ମେଦେହର ନାରାୟଣ ବନ୍ଦେ ॥

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ ବ୍ରତ ପୂଜା
କଥାୟାଂ ବୈଶ୍ୟ ସାଧୁ ଉପାଖ୍ୟାନେ ନାମୋ ଷଷ୍ଠଅଧ୍ୟାୟଃ ।

# ସପ୍ତମ ଅଧ୍ୟାୟ ।

## ( ଅଥ ଅଙ୍ଗଧ୍ୱଜ ରାଜା ଉପାଖ୍ୟାନ )

ଶ୍ରୀ ସୂତ ଉବାଚ ।

ଆସୀଦଙ୍ଗଧ୍ୱଜୋ ରାଜା ପ୍ରଜାପାଳନତତ୍ପରଃ ।
ପ୍ରସାଦଂ ସତ୍ୟ ଦେବସ୍ୟ ତ୍ୟକ୍ତ୍ୱା ଦୁଃଖ ମବାପ ସଃ । ୧ ।

ଏକଦା ସ ବନଂ ଗତ୍ୱା ହତ୍ୱା ବହୂ ବଧାନ୍ ପଶୂନ ।
ଆଗତ୍ୟ ବଟମୂଳଂ ଚ ଦୃଷ୍ଟବାନ୍ ସତ୍ୟପୂଜନଂ । ୨ ।

---

# ସପ୍ତମ ଅଧ୍ୟାୟ ।

## ଶ୍ରୀ ଅଙ୍ଗଧ୍ୱଜରାଜା ଉପାଖ୍ୟାନ ।

ଶ୍ରୀ ସୂତ ଉବାଚ ।

କହନ୍ତି ସୁତ ବ୍ରହ୍ମବେତ୍ତା । ଶୁଣ ଶୌନକ ମହାତ୍ମା ॥
ଶ୍ରୀ ଅଙ୍ଗଧ୍ୱଜ ନାମେ ରାଜ । ଥିଲା ପ୍ରତାପୀ ଅତି ତେଜା ॥
ପ୍ରଜା ପାଳଇ ପୁତ୍ରପରି । ଧନ ଜନରେ ପକ୍ଷ ପରି ॥
ପ୍ରସାଦ ସତ୍ୟଦେବଙ୍କର । ଅମାନ୍ୟ କରି ସେ ନୃବର ॥
ପାଇଲା ଅନେକ କଷଣ । ତାର ଚରିତ ଏବେ ଶୁଣ । ୧ ।

ଏକ ଦିନରେ ଅଙ୍ଗଧ୍ୱଜ । ମୃଗୟା ଅର୍ଥେ ହୋଇ ସଜ ॥
ବନରେ ପ୍ରବେଶ ହୋଇଲା । ବହୁତ ପଶୁଙ୍କୁ ମାରିଲା ॥
ଫେରନ୍ତେ କାନନ ମଧ୍ୟରେ । ଦେଖିଲା ଏକ ବଟ ତଳେ ॥
ଅନେକ ଗଉଡ଼େ ମିଳିଣ । ପୂଜନ୍ତି ସତ୍ୟ ନାରାୟଣ । ୨ ।

ଗୋପାଃ କୁର୍ବନ୍ତୁ ସନ୍ତୁଷ୍ଟା ଭକ୍ତିଯୁକ୍ତାଃ ସବାନ୍ଧବାଃ ।
ରାଜାଦୃଷ୍ଟ୍ୱାପି ଦର୍ପେଣ ଗତୋ ନ ନନାମ ସଃ । ୩ ।

ତତୋ ଗୋପଗଣାଃ ସର୍ବେ ପ୍ରସାଦଂ ନୃପସନ୍ନିଧୌ ।
ସଂସ୍ଥାପ୍ୟ ପୁନରାଗତ୍ୟ ଭୁକ୍ତ୍ୱା ସର୍ବେ ଯଥାଗତାଃ । ୪ ।

ଇଷ୍ଟଂ ପ୍ରସାଦଂ ସଂତ୍ୟଜ୍ୟ ରାଜା ଦୁଃଖମବାପ ସଃ ।
ତସ୍ୟ ପୁତ୍ର ଶତଂ ନଷ୍ଟଂ ଧନଂ ଧାନ୍ୟାଦିକଂ ଚ ଯତ୍ । ୫ ।

---

ଭକ୍ତି ଯୁକ୍ତରେ ତୋଷମନେ । ମେଳ ହୋଇଣ ଗୋପଗଣେ ॥
ସେ ରାଜା ତାହାଙ୍କୁ ଦେଖିଣ । ଗରବେ ନ କଲା ଗମନ ॥
ପୁଣିହିଁ ନ କଲା ପ୍ରଣାମ । ରାଜା ରହିଲା ନିଜସ୍ଥାନ । ୩ ।

ତହୁଁ ସେ ଗୋପାଳେ ସକଳେ । ପ୍ରସାଦ ଘେନିଣ ମିଳିଲେ ॥
ପ୍ରସାଦ ଦଅନ୍ତେ ରାଜାଙ୍କୁ । ନ ଘେନି ଆପଣା ହାତକୁ ॥
ଅଶ୍ରଦ୍ଧା ହୋଇ ନରସାଇଁ । ବୋଇଲା ରଖି ଯାଅ ଥୋଇ ॥
ରାଜାଙ୍କ ବାକ୍ୟରେ ଗୋପାଳେ । ପ୍ରସାଦ ଥୋଇ ଫେରିଗଲେ ॥
ସେ ପୂଜା ସ୍ଥାନରେ ମିଳିଲେ । ଆନନ୍ଦେ ପ୍ରସାଦ ଭକ୍ଷିଲେ । ୪ ।

ରାଜା ଯେ ସତ୍ୟଦେବଙ୍କର । ପ୍ରସାଦ ନ କରି ଆହାର ॥
ତ୍ୟାଗ କରିଣ ବେଗେ ଗଲା । ଆପଣା ଗୃହରେ ରହିଲା ॥
ତାହାର ଗର୍ବ ଦେଖିଣ । କୋପରେ ସତ୍ୟନାରାୟଣ ॥
ତାହାକୁ ବହୁ ଦୁଃଖ ଦେଲେ । ତା ଶତ ପୁତ୍ର ବିନାଶିଲେ ॥
ଆବର ଥିଲା ଯେତେ ଧନ । ସର୍ବ ନାଶିଲେ ନାରାୟଣ । ୫ ।

ସତ୍ୟ ଦେବେନ ଭଦ୍ରଙ୍ଗଂ ନାଶିତଂ ମମ ନଷ୍ଟିତଂ ।
ଅତ ସ୍ତତ୍ରୈବ ଗଚ୍ଛାମି ଯତ୍ର ଦେବସ୍ୟ ପୂଜନଂ । ୬ ।

ଇତି ସଂଚିନ୍ତ୍ୟ ମନସା ଯଯୌ ଗୋପାଳସନ୍ନିଧିଂ
ତତୋଽସୌ ସତ୍ୟଦେବସ୍ୟ ପୂଜା ଗୋପଗଣୈଃ ସହ । ୭ ।

ଭକ୍ତି ଶ୍ରଦ୍ଧାନ୍ୱିତୋ ଭୂତ୍ୱା ଚକାର ବଧିନା ନୃପଃ ।
ସତ୍ୟଦେବ ପ୍ରସାଦେନ ଧନ ପୁତ୍ରାନ୍ୱିତୋଽଭବତ୍ । ୮ ।

---

ସମ୍ପଦ ଆଦ ସବଧନ । ନୃପତି ହୁଅନ୍ତେ ସେ ରାଜନ ॥
ମନରେ କରଇ ବିଚାର । କି ଦୋଷୁଁ ଘଟିଲା ଏ ମୋର ॥
ଅବଶ୍ୟ ସତ୍ୟଙ୍କ କୋପରେ । ସମସ୍ତ ମୋର ନାଶ ଗଲେ ॥
ନୋହିଲେ ଏପରି ଘଟଣା । କାହିଁକି ଘଟନ୍ତା ଏ ଦିନା ॥
ଏମନ୍ତ ଚିନ୍ତା କରୁଁ ରାଜା । ମନେ ପଡ଼ିଲା ସତ୍ୟପୂଜା ॥
ସତ୍ୟଦେବଙ୍କ ପୂଜା ସ୍ଥାନ । ଯିବାକୁ ଚାହୁଁ ସେ ରାଜନ । ୬ ।

ମନେ ଚିନ୍ତିଣ ସତ୍ୟପୀର । ଯେଉଁଠି ପୂଜା ଉପଚାର ॥
ଗୋପାଳେ ଯହିଁ ସତ୍ୟଦେବ । ପୂଜନ୍ତି ହୋଇ ଏକଠାବ ॥
ସେଠାରେ ମିଳିଲା ରାଜନ । ଦେଖି ହୋଇଲା ତୋଷମନ । ୭ ।

ଗୋପାଳ ସଙ୍ଗେ ସଙ୍ଗ ହୋଇ । ଶ୍ରଦ୍ଧା ଭକ୍ତିରେ ନରସାଇଁ ॥
ଶ୍ରୀ ସତ୍ୟପୀର ବ୍ରତ ପୂଜା । ଯଥା ବିଧିରେ କଲ ରାଜା ॥
ଆନନ୍ଦେ ଗୋପାଳ ସଙ୍ଗରେ । ପ୍ରସାଦ ଖାଇ ତୋଷ ହେଲେ ॥
ନାନାଦି ଉତ୍ସବ ସେ କଲେ । ସେ ସ୍ଥାନୁଁ ଗୃହକୁ ଫେରିଲେ ॥
ସେ ସତ୍ୟଦେବଙ୍କ କୃପାରେ । ଧନ ପୁତ୍ରାଦି ସେ ଲଭିଲେ ॥

ଇହଲୋକେ ସୁଖଂ ଭୁକ୍ତ୍ୱା ପଶ୍ଚାତ୍ ସତ୍ୟପୁରଂ ଯଯୌ ।
ଯଂ ଇଦଂ କୁରୁତେ ସତ୍ୟବ୍ରତଂ ପରମଦୁର୍ଲଭଂ । ୯ ।

ଶୃଣୋତି ଚ କଥାଂ ପୁଣ୍ୟାଂ ଭକ୍ତିଯୁକ୍ତଃ ଫଳପ୍ରଦଂ ।
ଧନଧାନ୍ୟାଦିକଂ ତସ୍ୟ ଭବେତ୍ ସତ୍ୟପ୍ରସାଦତଃ । ୧୦ ।

ଦରିଦ୍ରୋ ଲଭତେ ବିତ୍ତଂ ବଦ୍ଧୋ ମୁଚ୍ୟେତ ବନ୍ଧନାତ୍ ।
ଭୀତୋ ଭୟାତ୍ ପ୍ରମୁଚ୍ୟେତ ସତ୍ୟମେତନ୍ନ ସଂଶୟଃ । ୧୧ ।

ଇପ୍‌ସିତଂ ଚ ଫଳ ଭୁକ୍ତ୍ୱା ଅନ୍ତେ ସତ୍ୟପୁରଂ ବ୍ରଜେତ୍ ।
ଇତିଦଂ କଥିତଂ ବିପ୍ରା ସତ୍ୟନାରାୟଣ ବ୍ରତଂ ।

---

ଜୀବନ୍ତେ ସୁଖ ସେ ଭୋଗିଲ । ଅନ୍ତେ ସେ ସତ୍ୟପୁର ଗଲ ॥
ଶ୍ରୀ ସତ୍ୟ ନାରାୟଣ ବ୍ରତ । ପରମ ଦୁର୍ଲଭ ଏହିତ ॥
ଯେ ଜନ ଭକ୍ତି ଯୁକ୍ତ ହୋଇ । ସର୍ବଦା ଏ ବ୍ରତ କରଇ ॥
ଧନଜନରେ ପରିପୂର୍ଣ୍ଣ । କରନ୍ତି ସତ୍ୟନାରାୟଣ । ୯ ।
ଆବର ଭକ୍ତି ଚିତ୍ତେ ନିତ୍ୟ । କଥା ଯେ ଶୁଣେ ନିୟମିତ ॥
ମନ କାମନା ପୂର୍ଣ୍ଣ ହୁଏ । ସର୍ବ ଦ୍ରିଷ୍ଟାଦି କ୍ଷୟ ଯାଏ ॥
ସେ ସତ୍ୟ ଦେବଙ୍କ କୃପାରେ । ଧନଧାନ୍ୟାଦି ସର୍ବ ମିଳେ । ୧୦ ।
ଦରିଦ୍ର ଲଭେ ବହୁ ଧନ । ବନ୍ଦୀ ଯେ ହୁଏ ମୋକ୍ଷବାନ ॥
ସକଳ ତାର ଡ଼ର ଭୟ । ଦୂର ଯେ ହୁଅଇ ନିଶ୍ଚୟ ॥
ଏଥି ସଂଶୟ ନାହିଁ ଆନ । କେବଳ ଭକ୍ତି ତତ୍ତ୍ୱ ଧ୍ୟାନ ॥
ଯେ ହରି ସତ୍ୟ ନାରାୟଣ । ନାଶନ୍ତି ସକଳ କଷଣ ॥
ଐଶ୍ୱର୍ଯ୍ୟ ଫଳ ସେ ଭୁଞ୍ଜଇ । ଦେହାନ୍ତେ ସତ୍ୟପୁର ଯାଇ ॥
ହେ ମହାଭାଗ ବିପ୍ରଗଣ । କହିଲି ଏ ବ୍ରତ ବିଧାନ ॥
ଶ୍ରୀ ସତ୍ୟନାରାୟଣ ବ୍ରତ । ଶୁଣିଣ ହୁଅ ତୋଷଚିତ୍ତ । ୧୨ ।

ଟକ୍ରତ୍ୱା ସର୍ବଦୁଃଖେଭ୍ୟୋ ମୁକ୍ତୋ ଭବନ୍ତି ମାନବାଃ ।
ବିଶେଷତଃ କଳିଯୁଗେ ସତ୍ୟପୂଜା ଫଳ ପ୍ରଦ । ୧୩ ।
କେଚିତ୍ କାଳାଂ ବଦିଷ୍ୟନ୍ତି ସତ୍ୟମୀଶଂ ତମେବ ହି ।
ସତ୍ୟନାରାୟଣଂ କେଚିତ୍ ସତ୍ୟଦେବ ତଥା ଧରେତ୍ । ୧୪ ।
ନାନାରୂପଧରୋ ଭୂତ୍ୱା ସର୍ବେଷାମୀପ୍ସିତ ପ୍ରଦଃ ।
ଭବିଷ୍ୟତି କଳୌ ସତ୍ୟଂ ବିଷ୍ଣୁ ରୂପୀ ସନାତନଃ । ୧୫ ।
ଯ ଇଦଂ ପଠତେ ନିତ୍ୟଂ ଶୃଣୋତି ମୁନି ସତ୍ତମାଃ ।
ତସ୍ୟ ନଶ୍ୟନ୍ତି ପାପାନି ସତ୍ୟଦେବ ପ୍ରସାଦତଃ । ୧୬ ।

---

ଯାହାଙ୍କ କୃପାବଳୁଁ ନର । ସର୍ବ ଦୁଃଖରୁ ହୋନ୍ତି ପାର ॥
ବିଶେଷେ କଳିଯୁଗେ ଖ୍ୟାତ । ଶ୍ରୀ ସତ୍ୟନାରାୟଣ ବ୍ରତ ॥
ମନ ବାଞ୍ଛିତ ଫଳଦାତା । ଯଶ ଶ୍ରୀ ବୃଦ୍ଧି ଭାଗ୍ୟ କର୍ତ୍ତା । ୧୩ ।
ଯେ ହରି ସତ୍ୟ ନାରାୟଣ । ଅଟନ୍ତି ପ୍ରଭୁ ଭଗବାନ ॥
କାଳ ସ୍ୱରୂପେ ସର୍ବନାଶ । କରନ୍ତି ପ୍ରଭୁ ଜଗଦୀଶ ॥
ବିଧାତା ରୂପରେ ଅଚ୍ୟୁତ । ସର୍ଜନା କରନ୍ତି ଜଗତ ॥
ଶ୍ରୀ ନାରାୟଣ ରୂପେ ହରି । ପାଳନ୍ତି ଚରାଚରେ ପୁରି ॥
ଶ୍ରୀ ସତ୍ୟଦେବ ରୂପେ ହରି । କଳିଯୁଗରେ ଅବତରି ॥
ନାନା ରୂପରେ ଅବତାର । ହୁଅନ୍ତି ଜଗତ ଈଶ୍ୱର ॥
ଯେ ପ୍ରଭୁ ବିଷ୍ଣୁ ସନାତନ । ଅଟନ୍ତି ପ୍ରଭୁ ନାରାୟଣ ॥
ଯେ ସତ୍ୟଦେବ ରୂପ ଧରି । କଳି କାଳରେ ଅବତରି ॥
ଭକ୍ତଜନଙ୍କ ବାଞ୍ଛାପୂର୍ତ୍ତି । କରନ୍ତି ସତ୍ୟ ନାରାୟଣ । ୧୫ ।
ଏହା ଯେ ନିତ୍ୟ ଶୁଣନ୍ତି । ସକଳ ପାପୁଁ ସେ ତରନ୍ତି ॥
ସେ ସତ୍ୟପୀର ପ୍ରସାଦରେ । ଦୁଃଖ ଯେ ନ ରହଇ ତାରେ ॥
ଆହେ ଶୌନକ ମୁନିଗଣେ । ଯେ ପ୍ରଶ୍ନ ପୁଚ୍ଛିଲେ ଆପଣେ ॥
ତାହା କହିଲି ଅନୁରାଗେ । ହେଜିବା ହେଉ ତୋଷ ରାଗେ ॥
ଶ୍ରୀ ଅଙ୍ଗଧ୍ୱଜ ଉପାଖ୍ୟାନ । ଏଠାରେ ହେଲା ସମାପନ ॥
ଶ୍ରୀ ସତ୍ୟନାରାୟଣ ବ୍ରତ । ସପ୍ତମ ଅଧ୍ୟା ସମାପତ । ୧୬ ।

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ
ବ୍ରତ ପୂଜା କଥାୟାଂ ଅଙ୍ଗଧ୍ୱଜ ରଜାଉପାଖ୍ୟାନେ
ବ୍ରତ କଥା ଖଣ୍ଡେ ନାମୋ ସପ୍ତମୋଽଧ୍ୟାୟଃ ।
ସମ୍ପୂର୍ଣ୍ଣ

ସୁଜନେ ବୋଲ ହରି ହରି । ପୂଜା କରଣ ଯାଅ ତରି ॥
ଜୟ ମେହେର ନାରାୟଣ । ଭରସା ପ୍ରଭୁ ନାରାୟଣ ॥
ଶ୍ରୀ ସତ୍ୟନାରାୟଣ ବ୍ରତ । ମୂଳ ସଂସ୍କୃତ ବ୍ୟାସ କୃତ ॥
ଯାହା କହିଲେ ମୁନିସୁତ । ଶୌନକ ମୁନିଙ୍କ ଅଗ୍ରତ ॥
ହେ ମୂଳ ସଂସ୍କୃତ ଯେ ବ୍ରତ । ଦେଖି ପ୍ରାକୃତେ କଲି ଗୀତ ॥
କେବଳ ନବାକ୍ଷରୀ ଛନ୍ଦେ । ଶୁଦ୍ଧ ରଚିଲି ଅଧ୍ୟା ବନ୍ଧେ ॥
ଶିକ୍ଷକ କାର୍ଯ୍ୟେ ବ୍ୟସ୍ତ ହୋଇ । ଶିଶୁଙ୍କୁ ଶିକ୍ଷା ଦେଉଥାଇ
ଏକାନ୍ତେ ସତ୍ୟଦେବ ବ୍ରତ । ଲେଖିଲି ଯା ହେଲା ବ୍ୟକତ ॥
ମୋ ପ୍ରଭୁ ସତ୍ୟ ନାରାୟଣ । ଶବର୍-ଧନ-ସୁତା-ପ୍ରାଣ-ଧନ ॥
ଦୀନବାନ୍ଧବ ଦେବ ହରି । ଅଗତି ଜନ ଦୁଃଖହାରୀ ॥
ଭକତ ଆରତ ନାଶନ । ପତିତୋଦ୍ଧାର ଭଗବାନ ॥
ସେ ହରି ଚରଣେ କମଳେ । ମୋ ଚିତ୍ତ ଥାଉ ସଦାକାଳେ ॥
ତାହାଙ୍କ ପଦ ଅନୁସରି । ଲେଖିଲି ବ୍ରତ ହୃଦେ ଧରି ॥
ବାଲ୍ୟ ସ୍ୱଭାବେ ମତିଭ୍ରମ । ମୋହର ନାହିଁ କିଛି ଜ୍ଞାନ ॥
ଏଥିରେ ମୋହର ଯା ଦୋଷ । ଥିଲେ ଖଣ୍ଡିବେ ଜଗଦୀଶ ॥
ନୂତନ ଓଡ଼ିଶା ପ୍ରଦେଶ । ଯେ ଖଡ଼ିଆଳ ରାଜ୍ୟ ଦେଶ ॥
ଉଦନ୍ତୀ ନଦୀର ଦକ୍ଷିଣେ । ନିବାସୀ ସିନାପାଲି ଗ୍ରାମେ ॥
ଦେବାଙ୍ଗ କୁଳେ ମୋର ଜାତ । ମେହେର ପଦବୀ ବିଦିତ ॥
ମେହେର ବଙ୍କ ମନୋହର । ଅଟନ୍ତି ପିଅର ମୋହର ॥
ତାହାଙ୍କ ଦୁଇଟି ସନ୍ତାନ । ମୁଁ ଅଟେ କନିଷ୍ଠ ନନ୍ଦନ ॥

ନାମ ମୋହର ନାରାୟଣ । ଭରସା ଏକା ନାରାୟଣ ॥
ପିତୃଦେବଙ୍କ ଠାରୁ ମୁହିଁ । ବାଲ୍ୟକାଳରୁ ଶିକ୍ଷାପାଇ ॥
ତାଙ୍କ ସୁକଲ୍ୟାଣ ହେବାରୁ । ଆବର ପ୍ରଭୁଙ୍କ କୃପାରୁ ॥
ବାଗ୍‌ଦେବୀ ବଦ୍ଧେଶଙ୍କୁ ଧ୍ୟାୟୀ । ଲେଖିଲି ପୂଜା ବ୍ରତ ଏହି ॥
ଇଂରେଜୀ ନଭେମ୍ବର ମାସ । ଏହିନ ତାରିଖ ବାଇଶ ॥
ସନ ଉଣେଇଶ ବୟାଳିଶ । ଯେ ଭୃଗୁ ପୂର୍ଣ୍ଣିମା ଦିବସ ॥
ଶ୍ରୀ ସତ୍ୟନାରାୟଣ ବ୍ରତ । ବ୍ରତଖଣ୍ଡ ଏ ସମାପତ ॥
ସୁଜନେ ବୋଲ ହରି ହରି । ମାୟା ସଂସାରୁ ଯିବ ତରି ॥
ଶ୍ରୀ ସତ୍ୟନାରାୟଣ ପାଦେ । ମେହେର ନାରାୟଣ ବନ୍ଦେ ॥
କହଇ ମନୋହର ସୂତ । ଶାନ୍ତିକର ହେ ଲକ୍ଷ୍ମୀକାନ୍ତ ॥

ଇତି ଶ୍ରୀ ସ୍କନ୍ଦପୁରାଣେ ରେବା ଖଣ୍ଡେ
ଶ୍ରୀ ସତ୍ୟ ନାରାୟଣ ବ୍ରତ ପୂଜା କଥାୟାଂ ଶ୍ରୀ ଅଙ୍ଗଧ୍ୱଜ
ରାଜା ଉପାଖ୍ୟାନେ ବ୍ରତ କଥା ଖଣ୍ଡେ
ନାମୋ ସପ୍ତମୋଽଧ୍ୟାୟଃ

## ସଂପୂର୍ଣ୍ଣ

ଶ୍ରୀ ଶୁଭମସ୍ତୁ



ଶ୍ରୀ ଗଣେଶାୟ ନମଃ

# ଶ୍ରୀ ସତ୍ୟନାରାୟଣ

# ଜନ୍ମଖଣ୍ଡ

## ଦ୍ୱିତୀୟ ଭାଗ



## ପ୍ରଥମ ଅଧ୍ୟାୟ ।

### କୁନ୍ତ ଯବନରାଜା ଚରିତ ।

[ ଶ୍ରୀ ଜଗନ୍ନାଥ ବନ୍ଦନା ]

ଜୟ ହେ ନୀଳାଦ୍ରୀ ନିବାସୀ । ବଡ଼ ଦେଉଳେ ଅଛ ବସି
ଭ୍ରାତା ଭଉଣୀ ସଙ୍ଗେ ଘେନି । ବଉଦ୍ଧ ରୂପେ ଅଛ ପୁଣି ॥
ଦ୍ୱୀତି ବୈକୁଣ୍ଠେ ପୁଣ୍ୟଧାମେ । ଉତ୍କଳେ ଶ୍ରୀ ପୁରୁଷୋତ୍ତମେ ॥
ଚକା ନୟନ ପଦ୍ମମୁଖ । ଚୁହିଁଲେ ଖଣ୍ଡଇ ଆତଙ୍କ ॥
ଭକତ ବୃନ୍ଦ ନିତ୍ୟ ରହି । ଅଛନ୍ତି ତବ ନାମ ଗାଇ ॥
କୈବଲ୍ୟ ପସର ଯେ ନିତ୍ୟ । ବିକା ହୁଅଇ ପୃଶ ହିତ ॥
ତାହା ଖାଇଣ ଭକ୍ତମାନେ । ସୁଖେ ଚଳନ୍ତି ନିଜସ୍ଥାନେ ॥
ନାମ ବହିଛ ଜଗନ୍ନାଥ । ଶୁଣୁଛ ଭକତ ଆରତ ॥
ପତିତ ଉଦ୍ଧାରଣ ଅର୍ଥେ । ବସିଛ ମହା ପୁଣ୍ୟକ୍ଷେତ୍ରେ ॥
କାହୁଁ ବା ପାଇବ ଦର୍ଶନ । ମୁହିଁ ଅଟଇ ପାପୀଜନ ।୧୦।
ତୁମ୍ଭର ହୋଇଲେ କରୁଣା । ଦର୍ଶନ ପାଇବ ମୁଁ ସିନା ॥
ହେ ପ୍ରଭୁ ଦେବ ଜଗନ୍ନାଥ । ପୂରାଅ ମୋର ମନୋରଥ ॥

ଶ୍ରୀ ସତ୍ୟ ନାରାୟଣ ଜନ୍ମ । ଲେଖିବ ଶକ୍ତି କର ଦାନ ॥
କହେ ନେହର ନାରାୟଣ । ତୁମ୍ଭ ଚରଣେ ରହୁ ମନ ॥

ଶ୍ରୀ ଶୌନକ ଉବାଚ ।

ଏଥୁ ଅନ୍ତରେ ମୁନିମାନେ । ପୁଣି ପୁଚ୍ଛନ୍ତି ତୋଷମନେ ॥
ହେ ସୂତ ମୁନି ଜସ୍ଥାବନ୍ତ । କଥାଏ କହନ୍ତୁ ବୁଝାଇ ॥
ଯେ ପ୍ରଭୁ ସତ୍ୟନାରାୟଣ । କିପରି ହୋଇଲେ ଜନମ ॥
ତାହାଙ୍କ ଜନମ ବିଧାନ । ବିସ୍ତାର କହ ମହାମୁନ୍ୟ ॥

ସୂତ ଉବାଚ ।

ଶୌନକ ମୁନିଙ୍କ ପ୍ରଶ୍ନରେ । କହନ୍ତି ସୂତ ମୁନି ଧୀରେ ॥
ବୋଲନ୍ତି ଶୁଣ ଋଷିଗଣ । କହିବା ସତ୍ୟପୀର ଜନ୍ମ ॥
ଯେ ହରି ବୈକୁଣ୍ଠ ଈଶ୍ୱର । ଜନ୍ମିଲେ ଅବନୀ ମଧ୍ୟର ॥
ଯେତେକ ରୂପ କଲିକାଳେ । ଅନେକ ଜନଙ୍କୁ ତାରିଲେ ॥
ସେ ସବୁ ଶୁଣି ଅଛ ତୁମ୍ଭେ । କହୁଛି ପୀର ଜନ୍ମ ଏବେ ॥
ସ୍ୱଭାବେ ଜନ୍ମ ଯାର ନାହିଁ । ମାୟାରେ ରୂପ ପ୍ରକାଶଇ ।୨୦।
ଦିନେ ବିଷ୍ଣୁ ନାରାୟଣ । ବିଜୟ ଆକାଶ ଆସ୍ଥାନ ॥
ମନେ କୌତୁକ କରି ଭଲେ । ଜନ୍ମିବା ପାଇଁ ଇଚ୍ଛା କଲେ ॥
ବୋଲନ୍ତି ମୁଁ ବୈକୁଣ୍ଠେଶ୍ୱର । ମୁହିଁ ଅଲେଖ ନିରାକାର ॥
ଜଗତ ଜନ ଉପକାରେ । ଲୀଳା ମୁଁ କରିବି ସଂସାରେ ॥
ଦକ୍ଷିଣ ସିନ୍ଧୁ ନୀଳାଚଳେ । ମୁହିଁ ଯେ ବଡ଼ ଦେଉଳରେ ॥
ଶ୍ରୀ ଜଗନ୍ନାଥ ନାମ ବହି । ମଣ୍ଡପେ ବସିଅଛି ରହି ॥
ହିନ୍ଦୁ ମୁସଲମାନ ଠୂଳ । ସମସ୍ତ ହୋଇ ଏକମେଳ ॥
କୈବଲ୍ୟ ପସରା ଯାବତ । ବସି ଭୁଞ୍ଜନ୍ତି ମୋର ଭକ୍ତ ॥
ଆନନ୍ଦେ ଖାଇ ସୁଖେ ବସି । ଜପନ୍ତି ମୋର ନାମ ଘୋଷି ॥
ମୋହର ନାମ ରାମାୟଣେ । ଆବର ଅନ୍ୟାନ୍ୟ ପୁରାଣେ ।୩୦।

ସୃଷ୍ଟିହିଁ କୋରାନ ପୁରାଣେ । ମୁସଲମାନ ସର୍ବଜାଣେ ॥
ପୁରି ରହିଛି ଏ ସଂସାର । ଦେଖିବ ଲୋକଙ୍କ ବେଭାର ॥
ମର୍ତ୍ତ୍ୟ ମାନବ ନିତ୍ୟ ଯେତେ । ମୋତେ ମାନନ୍ତୁ ନା ସମସ୍ତେ ॥
କଞ୍ଚା ପକ୍କା ଶିରିଣି ଦେଇ । ମୋତେ ପୂଜିବେ ନରେ ପୁଣି ॥
ଆନନ୍ଦେ ପ୍ରସାଦ ଖାଇବେ । ଅନେକ କଷ୍ଟୁ ତରିବେ ॥
ତେବେ ମୋ ସତ୍ୟପୀର ନାମ । ପ୍ରଚୁର ହେବ ସଂସାରେଣ ॥
ଏତେ ଭାବଣା ଦେବ ହରି । ଅନ୍ତରୀକ୍ଷରୁ ଅବତରି ॥
ପଙ୍କଜ କୁସୁମ ହୋଇଣ । ଯେ ପ୍ରଭୁ ସତ୍ୟ ନାରାୟଣ ॥
ଜାହ୍ନବୀ ଜଳର ମଧ୍ୟରେ । ପ୍ରଫୁଲ୍ଲେ ଫୁଟି ବିକାଶିଲେ ॥
ପୂର୍ବେ ଯେ ମକାର ସହରେ । କୁନ୍ତ ଯବନ ରାଜ୍ୟ କରେ ।୪।
ସେହି ରାଜାର ଏକ ଜେମା । ଥିଲା ସୁଷମା ମନୋରମା ॥
ତା ମୁଖ ମଣ୍ଡଳ ସୁନ୍ଦର । ନଭେ କି ଉଦେ ଶଶଧର ॥
ଜବା ପୁଷ୍ପକ ତା ଅଧର । ଡାଳିମ୍ବ ଦନ୍ତୀ ମନୋହର ॥
ସେ ଯେ ପରମା ରୂପବତୀ । ସମାନ ନୋହିବ କେଳତି ॥
ସ୍ୱଭାବେ ଷୋଡ଼ଶୀ ବୟସୀ । ସୁକାନ୍ତ ସୁମୁଖୀ ସୁକେଶୀ ॥
ନବ ଯୌବନ ବିଦ୍ୟାଙ୍ଗନା । ବିବେକୀ ଜନମନ କିଣା ॥
ଏତେକ ଅବିବାହୀ କନ୍ୟା । ରହିଛି ପିତା ଘରେ ସିନା ॥
ତେଣୁ ସେ ଯବନ ଦୁହିତା । କୋରାନ ଗ୍ରନ୍ଥ ପଢ଼େ ନିତି
ଜାଏଣେ ସେ ରାମ ରହିମାନ । ଅଲେଖ ଏକ ନିରଞ୍ଜନ ॥
ଦଇବ ଯୋଗେ ଦିନକରେ । ବାରୁଣୀ ପଡ଼ିଲା ଯୋଗରେ ।୫୦।
ସ୍ନାନ ଅର୍ଥେରେ ସେ ନବୀନା । ଯିବାକୁ କଲା ସେ କାମନା ॥
ସଙ୍ଗେ ତା ପରିବାରୀ ଗଣ । ଘେନିଣ କଲକ ଗମନ ॥
ନଫର ପରିକର ଯେତେ । ଚଳିଲେ ଆଗେ ପଛେ କେତେ ॥
ପାଲିଙ୍କି ଚଢ଼ି ରାଜଜେମା । ଚଳିଲା ହୋଇ ତୋଷ ମନା ॥
ଅନନ୍ତ ବିଳମ୍ବରେ ଗଲା । ପ୍ରୟାଗ ତଟରେ ମିଳିଲା ॥
ବାରିଜ କୁସୁମ ରୂପେଣ । ଥିଲେତ ସତ୍ୟ ନାରାୟଣ ॥

ପ୍ରୟାଗ ତଟେ ଗୃହପଟେ । ଫୁଟିଣ ସୁଗନ୍ଧ ଚହଟେ ॥
ନଳିନୀ ଦେଖି ରାଜଜେମା । ହୋଇଣ ଅତି ତୋଷମନା ॥
ଶୀଘ୍ରେ ଯାଇଣ ତୋଳିଲା । ଆଘ୍ରାଣ ତିନିବାର କଲା ॥
କୁସୁମ ସୁଘନ୍ତେ ତକ୍ଷଣ । ତା ଗର୍ଭେ ସତ୍ୟନାରାୟଣ ।୬୦।
ହରଷେ ଯାଇଣ ରହିଲେ । କୃଷ୍ଣ କି ଦେବକୀ ଉଦରେ ॥
ଭାଲପଟରେ ଯାହା ବନ୍ଧି । ସୂକ୍ତ କାଳରେ ଲେଖି ଥାଇ ॥
ତାହା କେ କରିପାରେ ଆନ । ଏ ଅନ୍ତେ ଶୁଣ ସାଧୁଜନ ॥
ସ୍ନାନ କରିଣ କନ୍ୟାଗଣ । ଗୃହକୁ କରିଲେ ଗମନ ॥
ନିଜ ମନ୍ଦିରେ ପରବେଶ । ଜେମା ହେ ହେଲା ଗର୍ଭବାସ ॥
ଦିନକୁ ଦିନ ଗର୍ଭ ତାର । ବଢ଼ିଲା କଅଁଳା ଶରୀର ॥
ମୁଖରେ ନ ରୁଚିଲା ଅନ୍ନ । ହାଇ ଉଠିଲା ଘନ ଘନ ॥
ପଲ୍ୟଙ୍କ ତେଜିଣ ଭୂମିରେ । ଶୋଇଲା ଅତି ଦୁଃଖଭରେ ॥
ଜେମାର ଗର୍ଭକୁ ଦେଖିଣ । ରାଣୀଙ୍କୁ ଯାଇ ଦାସୀଗଣ ॥
କହିଲେ ଜେମାର ବୃତ୍ତାନ୍ତ । ମନରେ ହୋଇଣ ଦୁଃଖିତ ॥
ଆମ୍ଭେ ତା ଜାଣି ନ ପାରିଲୁ । ତୁମ୍ଭ ଛାମୁରେ ଜଣାଇଲୁ ॥
କାହାର ସଙ୍ଗେ ତୁମ୍ଭ ଝିଅ । ପୀରତି କଲେକି ନଷ୍ଟୟୁ ॥
ଦାସୀ ବଚନ ଶୁଣି ରାଣୀ । ବଦନୁ ନ ସ୍ଫୁରଇ ବାଣୀ ॥
ରଜାର ନିକଟେ ମିଳିଲା । ଦୁଃଖିତେ ସମସ୍ତ କହିଲା ॥
ଜେମାର ଗର୍ଭକଥା ଶୁଣି । ଚିନ୍ତାରେ ଭଳି ନୃପମଣି ॥
ମୁଣ୍ଡେ କି କୁଳିଶ ପତନ । ହୋଇଲା ପରାୟେ ରାଜନ ॥
ସକ୍ରୋଧେ ମନ୍ତ୍ରୀକୁ ଡ଼ାକାଇ । ବୋଲେ ସଧୀରେ ନରସାଇଁ ॥
ହେ ମନ୍ତ୍ରୀ ଜେମା ମୋ କପର । ଦୋଷଗ୍ରସ୍ତ ହେଲା ଲଜ୍ଜାଭର ॥
କାହାର ସଙ୍ଗରେ ରସିଲା । ଆମ୍ଭଙ୍କୁ ଅପବାଦ ଦେଲା ॥
କୁଳେ ମୋ ଦେଲା ସେ କଳଙ୍କ । ତାହାକୁ ଦଣ୍ଡେହେ ନ ରଖ ।୮୦।
ଯାହାର ଝିଅ ମାତା ଘରେ । ସ୍ନେହ ପୀରତି କରେ ତାରେ ॥

ତାହାର ମୁଖକୁ ନ ଚାହିଁ । ଏପରି ଶାସ୍ତ୍ର ଅଛି କହି ॥
ଆମ୍ଭ ଆଜ୍ଞାରେ ତାଙ୍କୁ ନଅ । ଜୀବନ୍ତେ ଭୂମିରେ ପୋତାଅ ॥
ରାଜା ବଚନ ମନ୍ତ୍ରୀ ଶୁଣି । କହିଲ ମନେ ମନେ ଗୁଣି ॥
ହେ ରାଜା ତୁମ୍ଭେ ଶୁଦ୍ଧ କେହି । ମନୁଷ୍ୟ ପଶି ନ ପାରଇ ॥
ତା ଶୁଣି ରାଜା ପୁଣ ବୋଲଇ । ସତ୍ୟ ବଚନ ଜାଣ ଏହି ॥
ଆଉ ନ କହ ମନ୍ତ୍ରୀବର । ଜେମାକୁ ନେଇ ବେଗେ ମାର ॥
ରାଜାର ବଚନ ଶୁଣିଣ । ମନ୍ତ୍ରୀ କହଇ ଧୀରେ ପୁଣ ॥
ହେ ରାଜା ଗର୍ଭବତୀ ନାରୀ । କେମନ୍ତେ ପକାଇବ ମାରି ॥
ଦୋଷ ଉପରେ ମହାଦୋଷ । ଗର୍ଭିଣୀ ସ୍ତ୍ରିୟା କଲେ ନାଶ ।୯୯।
ଅଦୋଷେ ପ୍ରାଣୀଙ୍କି ନାଶିଲେ । ମହା ପାତକ ଲାଗେ ଭଲେ ॥
ଯେ ନର, ନର ଅବା ନାରୀ । ନାଶଇ କଛି ନ ବିଚାରି ॥
ତା ପ୍ରତିକାର କଛି ନାହିଁ । ଅନ୍ତେ ସେ ନର୍କ ଗତି ପାଇ ॥
ମାନବ ଜନ୍ମ ଏକା ସ୍ୱାର୍ଥ । କହିଲ ଆହେ ନରନାଥ ॥
ପଶୁ ବିହଙ୍ଗ ଆଦି ନର । ସକଳ ଜୀବ ଏକାକାର ॥
ସକଳ ପିଣ୍ଡ ମଧ୍ୟେ ହରି । ବିରାଜଛନ୍ତି ସମକରି ॥
ଏ କଥା ନିଶ୍ଚୟ ଜାଣିବ । ବିଚାରି ଆହେ ନରଧବ ॥
ପ୍ରସବ କଲେ ଜେମା ଜାଣ । କରିବା କାର୍ଯ୍ୟ ଅନୁଷ୍ଠାନ ॥
ଏବେ ଜେମାକୁ ବନ୍ଦିଘରେ । ରଖିବା ଅତ୍ୟନ୍ତ ଯତନରେ ॥
ଏମନ୍ତ ମନ୍ତ୍ରୀଠାରୁ ଶୁଣି । ରାଜାତକ୍ଷଣେବୋଲେବାଣୀ।୧୦୦
ଜେମାକୁ ନେଇ କାରାଗାରେ । ରଖାଅ ଆମ୍ଭର ଆଜ୍ଞାରେ ॥
ଶୁଣିଣ ରାଜାର ଆଦେଶ । ମନ୍ତ୍ରୀ ଦୂତକୁ ଡାକ ପାଶ ॥
କହେ ଜେମାକୁ ବେଗେ ନେଇ । ବନ୍ଦିରେ ଗୁଡ଼ିଆସ ଯାଇ ॥
ମନ୍ତ୍ରୀ ବାକ୍ୟରେ ରାଜାଦୂତେ । ତକ୍ଷଣେ ମିଳି ଜଣ କେତେ ॥
ଜେମାକୁ ଘେନି ବେଗେ ଗଲେ । ବନ୍ଦିରେ ଗୁଡ଼ିଣ ଅଇଲେ ॥
ସେଦିନୁ ପ୍ରତିଦିନ ଥରେ । ଜେମାର ବାର୍ତ୍ତା ରାଜାଠାରେ ॥

ଆବର ଭଲମନ୍ଦ ଯେତେ । ଜଣାଉ ଥାନ୍ତି ରାଜଦୂତେ ॥
ବନ୍ଦୀରେ ଥାଇ ରାଜାଝିଅ । ତା ମନ ହୋଇଲା ଅଥୟ ॥
ଦେବକୀ କଂସ ବନ୍ଧଘରେ । ଯେପରି ବ୍ୟାକୁଳ ଅନ୍ତରେ ॥
ନୃପ ବନ୍ଧଶାଳେ ଥାଇ । ଅତି ବ୍ୟାକୁଳ ଜେମା ଦେଈ ।୧୧०
ଦଇବେ ମାତାପିତା ବିନା । ଦଣ୍ଡ ଦେବାରୁ ଦୁଃଖମନା ॥
ଏପରି କେତେଦିନ ଗଲା । ଧର୍ମ୍ମର୍ତ୍ତି ଦଶମାସ ହେଲା ॥
ପ୍ରସବ କାଳ ଆଗମରେ । ଜେମାର ଗର୍ଭବ୍ୟଥା କରେ ॥
ଥରକୁ ଥର ଉଠେ ଶୂଳ । ଜେମା ଯେ ହୋଇଲା ବିକଳ ॥
କାନ୍ଦଇ ଦଇବ ସୁମରି । ବୋଲଇ ରକ୍ଷାକର ହରି ॥
ଏ ମହା କଷ୍ଟରୁ ଉଦ୍ଧାର । ମୋହର କେହି ନାହିଁ ଆର ॥
ତବ ଶ୍ରୀ ପଦରେ ଶରଣ । ପଶିଲି ରଖ ନାରାୟଣ ॥
ହରି ବୋଲ ହେ ସାଧୁଜନ । ପ୍ରଥମ ଅଧ୍ୟା ହେଲା ପୂର୍ଣ୍ଣ ॥
ଶ୍ରୀ ସତ୍ୟନାରାୟଣ ଜନ୍ମ । କହେ ମୋହର ନାରାୟଣ ।୧୨०।

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ ଜନ୍ମ
କୁନ୍ତ ପବନରାଜା ଚରିତ ଓ ରାଜଜେମା ଗର୍ଭ ସଞ୍ଚାର
ଶ୍ରୀ ସତ୍ୟନାରାୟଣ ଜନ୍ମ କଥନେ ନାମ
ପ୍ରଥମୋ ଅଧ୍ୟାୟଃ ।



## ଦ୍ୱିତୀୟ ଅଧ୍ୟାୟ

## ଶ୍ରୀ ସତ୍ୟନାରାୟଣ ଜନ୍ମ ଚରିତ

ସୂତ ଉବାଚ

କହନ୍ତି ସୂତ ବ୍ରହ୍ମବେତ୍ତା । ଶ୍ରୀ ସତ୍ୟଦେବ ଜନ୍ମ କଥା ॥
ମାତାଙ୍କ ଗର୍ଭେ ସତ୍ୟପୀର । ଥାଇଣ ବୋଲନ୍ତି ଯେ ଗୀର ॥
ହେ ମାତା ନ କର ଭାବନା । ମୁହିଁ ତୋ ଗର୍ଭେ ଅଛି ସିନା ॥

ମୁହିଁଟି ସତ୍ୟ ନାରାୟଣ । ମୋହର ବୈକୁଣ୍ଠ ଭୁବନ ॥
ମୁହିଁଟି ତୁମ୍ଭର ଉଦରେ । ଜନ୍ମିବି ଜୀବ ସ୍ୱରୂପରେ ॥
ପୁରୁଷ ଶଙ୍କର ମୋହର । ଜନ୍ମିବି କେମନ୍ତ ପ୍ରକାର ॥
କାହିଠା ଦିଅନ୍ତୁ ସତ୍ତ୍ୱର । ପିଣ୍ଡ ଜନ୍ମିବ ଧାତୁକାର ॥
କାହିଁକି ମନେ କର ଚିନ୍ତା । ମୁହିଁ ଗୋ ବ୍ରହ୍ମାଣ୍ଡ କରତା ॥
ଶୁକ୍ର ଯେପରି ଦେଲେ ଜାତ । ସେପରି ହୋଇବ ସମ୍ଭୂତ ॥
ତା ଶୁଣି ଜେମା ଆଚମ୍ବିତ । ମନରେ ହୋଇଲା ଚମ୍କିତ ।୧୦।
ଏକାଳେ ଏକ ବସ୍ତୁ କଲା । ଜେମାର ସମ୍ମୁଖେ ପଡ଼ିଲା ॥
ତକ୍ଷଣେ ଯେମା ଯେ ଦେଖିଲା । ତାହାକୁ ତୋଳିଣ ଧଇଲା ॥
ଆପଣା ଅଞ୍ଚଳ ଚିରିଲା । ଆପଣା ତୁଣ୍ଡରେ ଗଳିଲା ॥
ଯେ ଦଶ ମାସ ଦଶଦିନ । ହୁଅନ୍ତେ ସେ ଦିନରେ ପୂର୍ଣ୍ଣ ॥
ଦେବକୀ ଯେସନ୍ତ ବନ୍ଦିଘରେ । କୃଷ୍ଣଙ୍କୁ ଜନ୍ମ କରିଥିଲେ ॥
ସେପରି ରାଜଜେମା ଜାଣ । ପ୍ରଭୁଙ୍କୁ କରିବ ଜନମ ॥
ସ୍ୱପ୍ନରେ ମାତାଙ୍କୁ ରତନେଶ । ବିଷ୍ଣୁ ରୂପ ଦେଲେ ଦରଶନ ॥
ଶଙ୍ଖ ରଥାଙ୍ଗ ଗଦା ପଦ୍ମ । ସୁନ୍ଦର ଚତୁର୍ଭୁଜ ପଦ୍ମ ॥
ଗଳାରେ ଶୋଭେ ବନମାଳ । ସୁପୀତ ବସନ ମଞ୍ଜୁଳ ॥
ଶିରରେ ହାଟକ ମୁକୁଟ । ଜ୍ୟୋତି ପ୍ରକାଶେ ଝଟ ଝଟ ।୨୦
ତ୍ରର୍ଣ୍ଣମୀ ଜହ୍ନ କବା ନଭେ । ଘନେ କି ବିଦ୍ୟୁତ ଉଭବେ ॥
ସେପରି ସ୍ୱପ୍ନେ ସତ୍ୟପୀର । ଯେ ହରି ବୈକୁଣ୍ଠ ଈଶ୍ୱର ।
ଏରୂପେ ମାତାଙ୍କୁ ଦର୍ଶନ । ଦେଇ ହୋଇଲେ ଅନ୍ତର୍ଦ୍ଧାନ ॥
ସେକ୍ଷଣି ରାଜ ଜେମାମଣି । ପ୍ରସବ କଲହିଁ, ନ ଜାଣି ॥
ଚଉଦିଗକୁ ଅନାଇଲା । ଫୁଲ ପଡ଼ିବାର ଦେଖିଲା ॥
ବାଳକ ବାଳକା ନ ଦେଖି । ମନେ ବିସ୍ମୟ ହୋଇ ଦୁଃଖୀ ॥
ବୋଇଲା ଆହେ ଭଗବାନ । ସମସ୍ତ ତୁମ୍ଭ ର ଭିଆଣ ॥
କପାଇଁ ମୋହର ଗର୍ଭର । କପଟ କଲ ମାୟାଧର ॥

ବୋଲେ କି ପାପ କଲି ପୂର୍ବେ । ତେଣୁ ଟାଣିଲା ଦୁଃଖ ଏବେ ॥
ପୂର୍ବେ ବା ମାତା ପିତାଠାରେ । କି ଦୋଷ କରିଥିଲି ବାରେ
ତେଣୁ ମୁଁ କଲି ବନବାସ । କାହାକୁ ଦେବ ଅବା ଦୋଷ ॥
ପଶୁ ପକ୍ଷୀଙ୍କ ଏହୁ ବସା । ଏଥେ ଟାଣିଲା ମୁହିଁ ଦଶା ॥
ଏମନ୍ତ ଭାଳି ଜେମା ବସି । ତା ଜାଣି ପ୍ରଭୁ ବ୍ରହ୍ମରାଶି ॥
ତକ୍ଷଣେ ବଜେ ମାତା କୋଳ । ବାଳୁତ ଭାବେ ଆନନ୍ଦମୂଳ ॥
ଯା ଗର୍ଭେ ସପ୍ତଦ୍ୱୀପ ମହୀ । ପୂରି ରହନ୍ତି ଏକା ହୋଇ ॥
ସେ ପ୍ରଭୁ ମାତାଙ୍କର କୋଳେ । କ୍ଷୀର ପିଅନ୍ତି ବାଳଭାବେ ॥
ମାତାଙ୍କୁ ଚାହିଁ ସତ୍ୟପୀର । ବୋଲନ୍ତି ବଚନ ମଧୁର ।୨୦।
ତୁମ୍ଭେ କପାଇଁ ଆଗୋ ମାତା । ମନରେ କରୁଅଛ ଚିନ୍ତା ॥
ଆମ୍ଭେ ଗୋ ଅଛୁ ଭଗବାନ । ମନରେ ସଂଶୟ ନ ଘେନ ॥
ବହନେ ମନ୍ଦିରକୁ ଚାଲ । ସେଠାରେ ରହିବ କୁଶଳ ॥
ଏତେ କହିଣ ସତ୍ୟପୀର । ମାତାଙ୍କୁ ଦେଖାଇଲେ ଘର ॥
ପ୍ରଭୁଙ୍କ ଆଜ୍ଞାପାଇ ମାତ । ମନ୍ଦିରେ ହେଲେ ଉପଗତ ॥
ଅତ୍ୟନ୍ତ ଯତ୍ନେ ଅରଣ୍ୟରେ । ରଖିଲେ ପ୍ରଭୁ ସତ୍ୟପୀରେ ॥
ସେଠାରୁ ବେଗେ ସତ୍ୟପୀର । ପ୍ରବେଶ ସିଂହଦ୍ୱାର ॥
ବାଳକରୂପେ କାଠି ଧରି । ଧାଇଁଣ ଦେଖନ୍ତି ନଗରୀ ॥
ବାଟୁଳି ଧରି ସତ୍ୟପୀରେ । ମାରିଲେ ମନ୍ତ୍ରୀପୁଅ ଶିରେ ॥
ଶୂନ୍ୟରୁ ଯେସନ୍ତେ ବଜ୍ରପାତ । ପଡ଼ିଲେ ହୁଅଇ ଯେମନ୍ତ ।୩୦।
ଶୋଣିତେ ଜର୍ଜର ବସ୍ତ୍ରୁ । ଦେଖି ପିଲାଏ କଲେ ଭୟ ॥
ମୂର୍ଚ୍ଛିତ ହୋଇଣ ପଡ଼ିଲା । ମନରେ ଚେତନା ବୁଡ଼ିଲା ॥
ସମସ୍ତେ କଲେ ହାହାକାର । ନଗରେ ପଡ଼ିଲା ଚହଳ ॥
ବାରତା ପାଇ ମନ୍ତ୍ରୀବର । ମିଳିଲା ତା ପୁଅ ପାଶର ॥
ପୁତ୍ରକୁ ଦେଖି ମୂର୍ଚ୍ଛାଗଲା । ଚେତନା ପାଇଣ ଉଠିଲା ॥
ପୁତ୍ରର ମୁଖକୁ ଅନାଇ । କାନ୍ଦିଲା ଅତି ଦୁଃଖ ବହି ॥

ମନ୍ତ୍ରୀ ଭାରଯା ତାହା ଜାଣି । ମିଳିଲା ପୁତ୍ର ପାଶେ ପୁଣି ॥
କାନ୍ଦି କହଇ ଶୋକ କରି । ହା ପୁତ୍ର ଗଲୁ ଛାଡ଼ି କରି ॥
ଆହା ମୋ ରଣ୍ଡିଧନ ସୁନା । ଛାଡ଼ିଣ ଗୁଳିଗଲୁ କନା ॥
ଆହା ମୋ ଆଦରର ଧନ । ଦେଖାଅ ତୋ ଚନ୍ଦ୍ରବଦନ ।୪୦।
ସକଳ ବାଳକ ସଙ୍ଗରେ । ଖେଳୁଥିଲୁ ତୁ ଆନନ୍ଦରେ ॥
କେ ଆସି ତୋତେ ଯେ ମାଇଲା । ତା ଏତେ ସାହାସ ହୋଇଲା ॥
ସର୍ପ ମୁଖରେ କେବା ହାତ । ଭରିଲା ଏକ ଆଚମ୍ବିତ ॥
ଜ୍ୱଳନ୍ତ ନଳେ କେ ପଶିଲା । ଜୀବନେ କେହି ନ ତରିଲା ॥
ଆଉ କି ତୋହର ବଦନ । ଦେଖିବ ଏ ପାପୀ ନୟନ ॥
ଶୋକାର୍ଣ୍ଣବରେ ଏବେ ତୁହି । ଭସାଇ ଦେଇଗଲୁ କାହିଁ ॥
ମନ୍ତ୍ରୀ ଭାରଯା ଦାସୀଗଣ । କାନ୍ଦନ୍ତି ପୁତ୍ରକୁ ଧରିଣ ॥
ଏମନ୍ତ ବେଳେ ଶମ୍ଭୁ ହରି । ଫକୀରଙ୍କର ବେଶ ଧରି ॥
ସେଠାରେ ଯାଇଣ ମିଳିଲେ । ଦେଖି ଆଶ୍ଚର୍ଯ୍ୟ ସର୍ବେ ହେଲେ ॥
ଲୋକଙ୍କୁ ଦେଖିଣ ଫକୀର । କହନ୍ତି ହୋଇ ତତପର ।୫୦।
କିମ୍ପାଇ କାନ୍ଦୁଛ ଏଠାରେ । ବୁଝାଇ କହ ବାବା ଧୀରେ ॥
ତା ଶୁଣି କହେ ମନ୍ତ୍ରୀବର । ଶୁଣନ୍ତୁ ଏହି ସମାଚାର ॥
ଘରୁ ବାହାରି ମୋର ବଳା । ବାଳକ ସଙ୍ଗେ ଖେଳିଗଲା ॥
ତାହାକୁ ଖେଳିବା ବେଳରେ । ବାଟୁଳି ମାଇଲା କେ ଜୋରେ ॥
ବାଟୁଳି ଘାତେ ସୁତ ପ୍ରାଣ । ଯିବାରୁ ଆକୁଳ ଜୀବନ ॥
ତା ଶୁଣି କହନ୍ତି ଫକୀର । କିଛି ନ ଭାଳ ମନ୍ତ୍ରୀବର ॥
ଆୟୁଷ ଅଛି ବାଳକର । ନିଶ୍ଚେ ବଞ୍ଚିବ ତୋ କୁମର ॥
ନଳିନୀ ଦଳେ ଯେସନେ ଜଳ । ଥାଇଣ ହୁଏ ଟଳ ଟଳ ॥
ସେପରି ତୁମ୍ଭର ବାଳକ । ମୂର୍ଚ୍ଛାରେ ପଡ଼ିଅଛି ଦେଖ ॥
ଆମ୍ଭର ବଚନେ ସତ୍ୱରେ । ଶିରନି ଦେଇ ସତ୍ୟପୀରେ ॥
ପୂଜିଲେ ବଞ୍ଚିବ ନନ୍ଦନ । ଆମ୍ଭ ବଚନ ନୁହେ ଆନ ॥
ତା ଶୁଣି କହେ ମନ୍ତ୍ରୀବର । ବଞ୍ଚିବ ଯେବେ ମୋ କୁମର ॥

ଯଥା ବଧିରେ ମୁଁ ଶିରନି । ଦେଇ ପୂଜିବି ନଷ୍ଟେ ପୁଣି ॥
ମନ୍ତ୍ରୀ ମୁଖରୁ ଏହି ଗିର । ଶୁଣି ଆନନ୍ଦ ସତ୍ୟପୀର ॥
ପଦ୍ମ ଆସନେ ବସି ହରି । ମନ୍ତ୍ରୀ ପୁଅକୁ କୋଳେ ଧରି ॥
ସୁମରି ମୃତ୍ୟୁ ସଞ୍ଜୀବନ । ଜିଆଁଇ ଦେଲେ ଚକ୍ରପାଣି ॥
ଦେଖିଣ ସର୍ବେ ତୋଷ ହେଲେ । ସେଠାରୁ ଶୋକତ୍ୟାଗ କଲେ ॥
ଭକ୍ତବତ୍ସଳ ସତ୍ୟପୀର । ସେ ସ୍ଥାନେ ହୋଇଲେ ଅନ୍ତର ॥
ପୁତ୍ର ପାଇଣ ମନ୍ତ୍ରୀବର । ଗୃହକୁ ଚଳିଲ୍ ସତ୍ୱର ॥
ଉତ୍ତମ ଆସ୍ଥାନ ରଚିଣ । ନିର୍ମାଣ କଲ୍ ପୂଜାସ୍ଥାନ ॥
ହିନ୍ଦୁ ମୁସଲମାନ ସର୍ବ । ନିମନ୍ତ୍ରୀ ଅଣାଇଲ୍ ଜନ ॥
ସନ୍ଧ୍ୟା ସମୟେ ମନ୍ତ୍ରୀବର । ପୂଜଇ ଦେବ ସତ୍ୟପୀର ॥
ସବା ହଜାର ଗୁଆପାନ । ଶିରନି ଇତ୍ୟାଦି ଘେନିଣ ॥
ଗନ୍ଧ କୁସୁମ ଧୂପ ଦୀପ । ସକଳ ଥୋଇଣ ସମୀପ ॥
ଗହମ ଶର୍କରା ଅଣ୍ଠାଦି । ଲବଙ୍ଗ ଅଳାଇଚ ଆଦି ॥
ପଞ୍ଚାମୃତାଦି ସହିତରେ । ଯେତେକ ଲଗଇ ପୂଜାରେ ॥
କୁଳୀନ ବ୍ରାହ୍ମଣ ଡାକିଣ । ଆବର ବନ୍ଧୁ ବର୍ଗଗଣ ॥
ଆସ୍ଥାନ ନିକଟେ କଳଶ । ସ୍ଥାପିଲେ ନେଇ ଗୃହଦାଶ ॥
ପଞ୍ଚଦେବତା ପୂଜା କଲେ । ନାମ ଗୋତ୍ରାଦି ସୁମରିଲେ ॥
ସୁମରି ସତ୍ୟ ନାରାୟଣ । ମୂରତି ସ୍ଥାପିଲେ ବ୍ରାହ୍ମଣ ।୮୦ ।
ଓଁକାର କରି ଉଚ୍ଚାରଣ । ଶିରନି ପ୍ରସାଦ ଘେନିଣ ॥
ନୈବେଦ୍ୟ କରି ପୂଜା ଗୀତ । ଶେଷ କରିଣ ପୁରୋହିତ ॥
ପ୍ରସାଦ ଶିରନି ପଞ୍ଚାମୃତ । ବାଣ୍ଟିଲେ ସବୁଙ୍କୁ ଏକତ୍ର ॥
ପ୍ରସାଦ ଖାଇ ସର୍ବେ ଗଲେ । ଦେଖି ହରଷ ସତ୍ୟପୀରେ ॥
ଏଥି ଉତ୍ତାରେ ମନ୍ତ୍ରୀବର । ପ୍ରସାଦ ଘେନିଣ ହସ୍ତର ॥
ରାଜାକୁ କହଇ ବଚନ । ପ୍ରସାଦ କରନ୍ତୁ ଗ୍ରହଣ ॥
ଶୁଣି ବୋଲଇ ନରସାଇଁ । ବିବାଦ କଲ୍ କାହାପାଇଁ ॥

ପ୍ରସାଦ ଯେଉଁଣ ସ୍ୱହସ୍ତେ । ଦେଉଅଛ ନଜେ ତୁମ୍ଭେମୋତେ ॥
ମନ୍ତ୍ରୀ ବୋଲଇ ହୃଷ୍ଟଚିତ୍ତେ । ଆପଣ ଶୁଣନ୍ତୁ ସୁଚିତ୍ତେ ॥
ଯେରୂପେ ମଲ୍ଲ ତାର ସୁତ । କହିଲ୍ ସକଳ ବୃତ୍ତାନ୍ତ ।୯୦।

ମନ୍ତ୍ରୀ ମୁଖରୁ ଏହିବାଣୀ । ରାଜା ଯେ ହାସ୍ୟ କଲ୍ ପୁଣି ॥
ବୋଇଲ୍ ମନ୍ତ୍ରୀହେଲ ବାଇ । ଏମନ୍ତ ପଦାର୍ଥ ନ ଛୁଇଁ ॥
ଆମ୍ଭର ଯେ ଇଷ୍ଟ ଦେବତା । ଖୋଦା ଅଟନ୍ତି ପିତା ମାତା ॥
ଆମ୍ଭର ଜାତି ମୁସଲମାନ । ହେ ମନ୍ତ୍ରୀ କହୁଛ କେସନ ॥
ଅନ୍ୟ ଦେବତା ପୂଜା ଦ୍ରବ୍ୟ । ନ ଭୁଞ୍ଜୁ ଏହା ଯେ ଜାଣିବ ॥

ଶୁଣିବେଗରେ ମନ୍ତ୍ରୀବର । ପ୍ରସାଦେ ଘେନି ଚଳେ ଘର ॥
ରାଜନ ପ୍ରସାଦ ଯେମନ୍ତ । ଫେରାଇ ଦେଲ୍ ମନ୍ତ୍ରୀ ହସ୍ତ ॥
ତାହା ଜାଣିଲେ ସତ୍ୟପିର । କୋପ କହିଲେ ରାଜା ପର ॥
ମାୟାରେ ବ୍ୟାଘ୍ର ଜାତ କଲେ । ଉତ୍ପାତ କର ଯା ବୋଇଲେ ॥
ତକ୍ଷଣେ ପ୍ରଭୁଙ୍କ ଆଜ୍ଞାରେ । ହମାମ ହୁମାମ ଶାର୍ଦ୍ଦୂଳେ ।୧୦୦।

ରାଜାର ନଗରେ ପଶିଣ । ଖାଇଲେ ମନୁଷ୍ୟ ଧରଣ ॥
ବ୍ୟାଘ୍ର ଭୟରେ ନଗ୍ରଲୋକେ । ବୋବାଳି ଗୁଡ଼ିଲେ ଯେ ଥୋକେ ॥
ବ୍ୟାଘ୍ର ଯେ ଲୋକଙ୍କୁ ଖାଇଲ୍ । ନଗ୍ରେର ହୁରି ପଡ଼ିଗଲ୍ ॥
ରାଜାର ପ୍ରଜାଗଣ ଯେତେ । ବସି ବିଗ୍ଭର କଲେ କେତେ ॥
ରାଜାର ନିକଟେ ମିଳିଲେ । ବ୍ୟାଘ୍ର ଉତ୍ପାତ ଜଣାଇଲେ ॥

ବଣରୁ ଆସି କେତେ ବ୍ୟାଘ୍ର । ଉଜାଡ଼ କଲେ ତପ ନଗ୍ର ॥
ଶୁଣିଣ ପ୍ରଜାଙ୍କ ବଚନ । ରାଜା କହଇ ଦୁଃଖିତେଣ ॥
ସୈନ୍ୟ ସାମନ୍ତ ସଜ କର । ବ୍ୟାଘ୍ର ମାରିବା ଅରଣ୍ୟର ॥
ରାଜା ବଚନେ ସୈନ୍ୟଗଣ । ସଜ ହୋଇଲେ ତତକ୍ଷଣ ॥
ଶିକାର୍ଥେ ହୋଇଲେ ବାହାର । ସଇନ ଅପାରୁ ଅପାର ।୧୧୦।
ଆନନ୍ଦେ ଶୁଣ ସାଧୁଜନ । ପୀରଙ୍କ ମହିମା କଥନ ॥

ଶ୍ରୀହରି ନାମ କର ଗାନ । କଳୁଷ ହୋଇବ ଦହନ ॥
ଶ୍ରୀ ସତ୍ୟନାରାୟଣ ଜନ୍ମ । ତୃତୀୟ ଅଧ୍ୟାୟ ସମାପନ ॥
ସେ ସତ୍ୟପୀରଙ୍କ ଚରଣ । ଧ୍ୟାୟେ ମେଦେହରିନାରାୟଣ ।୧୧୫।

ଇତି ଶ୍ରୀ ସ୍କନ୍ଦ ପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ
ଜନ୍ମଖଣ୍ଡେ ଶ୍ରୀ ସତ୍ୟନାରାୟଣ ଜନ୍ମ ଚରିତେ
ମନ୍ତ୍ରୀପୁତ୍ର ଜୀବଦାନେ ନାମୋ
ତୃତୀୟୋ ଅଧ୍ୟାୟଃ ।

—ଃ୦ଃ—

## ଚତୁର୍ଥ ଅଧ୍ୟାୟ

## କ୍ରୁର ଯବନରାଜା ଓ ଶ୍ରୀ ସତ୍ୟନାରାୟଣଙ୍କ ଯୁଦ୍ଧ

ଶ୍ରୀ ସୂତ ଉବାଚ ।

ଆନନ୍ଦେ ସୂତ ମହାମୁନି । କହନ୍ତି ପୀରଙ୍କ କାହାଣୀ ॥
ଶୁଣ ଶୌନକ ମୁନିଗଣ । ଏ ଅନ୍ତେ ଯାହା ହେଲା ଶୁଣ ॥
ହରି ଭଜନ୍ତି ହିନ୍ଦୁନର । ମୁସଲମାନ ଭଜେ ପୀର ॥
ବ୍ୟାଘ୍ର ମାରିବ ମୂଳକରି । ସୈନ୍ୟ ସେନାଣ ଦଣ୍ଡଧାରୀ ॥
ଗଜ ଅଶ୍ୱାଦି ସଙ୍ଗେ ନେଲା । କାନନେ ଯାଇଣ ମିଳିଲା ॥
ସିପାହିମାନେ ଧନୁ ଧରି । ଚଳିଲେ ଅତି କ୍ରୋଧ କରି ॥
ବାଜିଲା ନାଗରା ନିଶାଣ । ଅସଂଖ୍ୟ ଗଜ ଅଶ୍ୱ ସୈନ୍ୟ ॥
ପଦାତି ହଜାର ହଜାର । ଯେସନେ ପିମ୍ପୁଡ଼ିର ଧାର ॥
ସେପରି ରାଜାର ସଇନ । କେ ପୁଣି କରିବ ଗଣନ ॥
ବନ୍ଧୁକ ଫାରି ଖଣ୍ଡା ସେନ । ଧାଇଁଲେ ମଗଲ ସଇନ ।୧୦

ତାହାଙ୍କ ପଛେ ରାଜା ମନ୍ତ୍ରୀ । ବଳେ ପୂ ଚଢି ମତ୍ତହସ୍ତୀ ॥
ସୈନ୍ୟ ଡାକନ୍ତି ମାର ମାର । କୋପେ ବୋଲନ୍ତି ଧର ଧର ॥
ଜଙ୍ଗଲେ ପଶି ସବୁ ସୈନ୍ୟ । ଉଜାଡ଼ି କଲେ ତରୁତୃଣ ॥
ପଶୁ ପତଙ୍ଗ ଆଦି ଜୀବ । ଦେଖିଲେ ଗୋଡ଼ାଇ ମାରିବ ॥
ଶୁଣି ସେନାଏ ଗଲେ ଧାଇଁ । ବିନାଶ କଲେ ବନଭୂଇଁ ॥
ଏ କାଳେ ସବୁ ବନ ଜୀବ । ଗୁପତ କଲେ ସତ୍ୟଦେବ ॥
ରାଜା କହନ୍ତି ସୈନ୍ୟ ଚାହିଁ । ଅରଣ୍ୟ ଜୀବ ଗଲା କାହିଁ ॥
କେବଣ ଆଡେ଼ ପଳାଇଲେ । କେହି ସେ ଦେଖି ନ ପାରିଲେ ॥
କି ବୁଦ୍ଧି କରିବା ଏଥର । ପଶୁଏ ନାହାନ୍ତି ଏଠାର ॥
ତା ଶୁଣି କହେ ରାଜମନ୍ତ୍ରୀ । କୁଣ୍ଡିଆ କରିଥିବା ଏଥି । ୨୦ ।
ଲୁଚି ମାରିବା ବନ ଜୀବ । ହେଉ ବୋଇଲା ନରଧବ ॥
ସେଠାରୁ ରାଜା ଆଜ୍ଞା ପାଇ । ସୈନ୍ୟ ଫେରାଇ ଲୋକେ ଯାଇ ॥
ଗହନ କାନନ ମଧର । ଦେଖିଲେ ଏକଇ ମନ୍ଦର
ରାଜା ଆଗରେ ଯାଇ ଚର । କହିଲା ମନ୍ଦିର ଖବର ॥
ତା ଶୁଣି ରାଜା ମନ୍ତ୍ରୀ ସଙ୍ଗେ । ଚଳିଲେ ଦେଖିବାକୁ ବେଗେ ॥
ମନ୍ତ୍ରୀକୁ କହଇ ରାଜନ । ଦେଉଳ କେ କଲା ନିର୍ମାଣ ॥
ରାଜା ବଚନେ ମନ୍ତ୍ରୀବର । କହଇ ଯୋଡ଼ି ଦେବକର ॥
ମୋତେତ ନାହିଁଟି ଗୋଚର । କେଜାଣି କେ କଲା ତିଆର ॥
ତାହା ଶୁଣିଣ ନରରାୟ । ମନରେ କଲା ମହାଭୟ ॥
ପୁଣି କହଇ ସୈନ୍ୟ ଚାହିଁ । ମନ୍ଦିରେ ପଶରେ ଝସାଇ । ୩୦ ।
କେ ଅଛୁ କର ନିରୀକ୍ଷଣ । ମୋ ପାଶେ ବେଗେ ଧରିଆଣ ।
ରାଜା ଆଦେଶେ ପଦାକାର । ଝଟତି ପଶିଲେ ମନ୍ଦର ॥
ଦେଖି କାତର ରାଜା ହିଆ । ମନେ ଚିନ୍ତିଲା ଦେବ ରାୟ ॥
ହେ ପ୍ରଭୁ ଦେବ ସତ୍ୟପୀର । ବାରେକ ଆସି ରକ୍ଷାକର ॥
ମୋହର କେହି ନାହିଁ ସାହା । କା ଆଗେ ଜଣାଇବି ଏହା ॥

କାହିଁ ଅଛ ହେ ବାବା ଏବେ । ଆସିଣ ରକ୍ଷାକର ଏବେ ॥
ବିଳମ୍ବ ନ କରଣ ଆସ । ମୋହର କୋଳେ ବେଗେ ବସ ॥
ରାଜା ସଇନ ଗଣ ଆସି । ଦଣ୍ଡୁ ଅଛନ୍ତ ଏଥେ ପଶି ॥
ମାତାଙ୍କ ସ୍ମରଣ ଜାଣିଣ । ସେ ହରି ସତ୍ୟ ନାରାୟଣ ।
ଅକସ୍ମାତରେ ମାତା କୋଳେ । କ୍ଷୀର ପିଅନ୍ତ ବାଳ୍ୟଚ୍ଛଳେ ।୪୦।
କୃଷ୍ଣଙ୍କୁ ଯଶୋଦା ଯେପରି । କ୍ଷୀର ପିଆନ୍ତ କୋଳେ ଧରି ॥
ସେହି ସ୍ୱରୂପେ ପ୍ରଭୁ ଆସି । ବାଳ ମକୁନ୍ଦ ବ୍ରହ୍ମରାଶି ॥
ମାତାଙ୍କୁ ବୋଲନ୍ତ ବଚନ । କାହିଁକି କର ଦୁଃଖମନ ॥
ରାଜାଙ୍କ ସଙ୍ଗେ ଏବେ ମୁହିଁ । ଲଢିବି କିଛି ଭୟ ନାହିଁ ॥
ଆପଣା ଦୋଷରେ ନୃପତି । ହାରିବ ଏଠାରେ ଏ ଯାନ୍ତି ॥
ଏମନ୍ତେ ମାତାଙ୍କୁ କହିଣ । ହରି ସେ ହେଲେ ଅନ୍ତର୍ଦ୍ଧାନ ॥
ଶୂନ୍ୟରେ ଥାଇ ସତ୍ୟପୀର । କହନ୍ତ ଆହେ ନରବର ॥
ମାତାଙ୍କୁ କେବଣ କାରଣ । ଆସିଣ ଦେଉଛ କଷଣ ॥
ପ୍ରାଣ କି ହରାଇବା ଇଚ୍ଛା । ଯେବେ ଆପଣା ଭଲ ବାଞ୍ଛ ॥
ବିଳମ୍ବ ନ କର ପଳାଅ । ଏଠାରେ ଦଣ୍ଡେହେ ନ ଥାଅ ।୫୦।
ଥିଲେ ସକଳେ ହେବ ନାଶ । ପଛେ ନ ଦେବ ମୋତେ ଦୋଷ ॥
ରାଜା କହଇ କ୍ରୋଧ ହୋଇ । କାହାକୁ ମୁହିଁ ନ ଡରଇଁ ॥
ଏମନ୍ତ ବୋଲି ଦଣ୍ଡଧାରୀ । ଯୁଦ୍ଧେ ପ୍ରବେଶ ଧନୁଧରି ॥
ନ ମାନ କାହାର କଥାକୁ । ଯେସନେ ରାବଣ ଶ୍ରୀରାମଙ୍କୁ ॥
ସୀତା ନ ଦେଇ ଯୁଦ୍ଧ କଲା । ସବଂଶେ ହୋଇଲେ ନାଶ ଗଲା ॥
ସେପରି ଅତି ଗର୍ବ ବହି । ସମରେ ପଶିଲା କି ଡେଇଁ ॥
ଏଥୁ ଅନ୍ତରେ ସାଧୁମତି । ଶୁଣ ପୀରଙ୍କ ଯୁଦ୍ଧରୀତି ॥
ରାଜା ସଙ୍ଗରେ ସତ୍ୟପୀର । ଯୁଦ୍ଧ କରନ୍ତ ଗୁରୁତର ॥
ପାଇକ ରଥ ହାତୀ ଘୋଡ଼ା । ମୁଗଲ ସୈନ୍ୟ ଯୋଡ଼ା ଯୋଡ଼ା ।୬୦।
ନୈଷ୍ଠିକ ପଠାଣ ସଇନ । ଲଣ ମୋଡ଼ନ୍ତ କରି ଟାଣ ॥

କେହୁ ବୋଲଇ ଧର ଧର । କେହୁ ବୋଲଇ ମାର ମାର ॥
ରାବଣ ପରେ ରାମ ଶର । ଯେସନ୍ତେ ପଡ଼ଇ ବାରମ୍ବାର ॥
ସେପରି ରାଜାର ଉପରେ । ବାଣ ପେଷନ୍ତି ସତ୍ୟପୀରେ ॥
ଶୂନ୍ୟରେ ଥାଇଣ ହସନ୍ତି । ସୈନ୍ୟଙ୍କୁ ମାଇଲେ ସେ ମତି ॥
ପବନଘାତେ ଯେସନ୍ତେ ବୃକ୍ଷ । ଭାଙ୍ଗିଣ ପଡଇ ଅନେକ ॥
ମୂର୍ଖ ବନ୍ଧୁଙ୍କ ଶିକ୍ଷଣରେ । ପ୍ରାଣ ଛାଡ଼ିଲେ କେତେ ବୀରେ ॥
ଖଣ୍ଡା ପରିଘ ଘାତ ପାଇ । ସବେ ପଡିଲେ ରଣଭୂଇଁ ॥
ବଞ୍ଚିଲେ ରାଜା ମନ୍ତ୍ରୀ ଦୁଇ । ଆଉ ସଙ୍ଗରେ କେହି ନାହିଁ ॥
ପୀରଙ୍କ ଆଦେଶ ପାଇଣ । ବ୍ୟାଘ୍ରାଦି ହିଂସ୍ର ଜନ୍ତୁଗଣ ।୨୦।
ହଜାର ହଜାର ଆସିଲେ । ଅନେକ ଜନଙ୍କୁ ଖାଇଲେ ॥
ଶୃଗାଳ କାକ ଗୃଧ୍ର ଯେତେ । ମାଂସ ଖାଇଲେ ସନ୍ତୋଷ ଚିତ୍ତେ ॥
ସବୁ ସଇନ ହେଲେ ନାଶ । ରହିଲେ ମନ୍ତ୍ରୀ ନରଈଶ ॥
ଶୋକାର୍ତ୍ତ ହୋଇ ମନ୍ତ୍ରୀ ନୃପ । କାନ୍ଦନ୍ତେ ମନେ ବହି ତାପ ॥
ସୁଜନେ ହରି ହରି ଘୋଷ । ଚତୁର୍ଥ ଅଧ୍ୟା ହେଲା ଶେଷ ॥
କହେ ମେହେର ନାରାୟଣ । ରକ୍ଷା କରହେ ନାରାୟଣ ।୨୬।

ଇତି ଶ୍ରୀ ସ୍କନ୍ଦପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣଜନ୍ମ ଖଣ୍ଡେ କୃନ୍ତ ଯବନରାଜା ଶ୍ରୀ ସତ୍ୟନାରାୟଣଙ୍କ ଯୁଦ୍ଧ ମହିମାବର୍ଣ୍ଣନେ ଚତୁର୍ଥଅଧ୍ୟାୟଃ

---

## ପଞ୍ଚମ ଅଧ୍ୟାୟ

## ଶ୍ରୀ ସତ୍ୟନାରାୟଣ ବ୍ରତ ପୂଜା ବର୍ଣ୍ଣନ

### ଶୌନକ ଉବାଚ

ଆନନ୍ଦେ ଶଉନକ ମୁନି । ପୁଚ୍ଛନ୍ତି ଭକ୍ତିଭାବ ଘେନି ॥
ତହୁଁ କି କଲା ନରସାଇଁ । ସେ କଥା କହ ଦୟା ବହି ॥

### ଶ୍ରୀ ସୂତ ଉବାଚ

ଶୌନକ ବାକ୍ୟେ ସୂତ ମୁନି । କହନ୍ତି ପୀରଙ୍କ କାହାଣୀ ॥
ସମରେ ଯେତେକ ସଇନ । ପଡ଼ି ହୋଇଲେ ହତଜ୍ଞାନ ॥

ଦୁଃଖ ଶୃଙ୍ଖଳରେ ପଡ଼ି ନୃପ । କାନ୍ଦଇ ବହୁ ମନେ ତାପ ॥
ନିଜ କପାଳେ ମାରି ହାତ । ବୋଲେ ଏ ଦଇବର କୃତ୍ୟ ॥
ଦୁଃଖ ଉପରେ ଦୁଃଖ ଭର । ପଡ଼ିଲା ମୋହର କର୍ମର ।
ମୋର ଖବର ମନ୍ତ୍ରୀ ବର । ସତ୍ୱରେ ଦଅ ତୁମ୍ଭେ ଧର ॥
ସୈନ୍ୟଙ୍କୁ ହଇରଣ ଏବେ । ପ୍ରାଣ ମୁଁ ନ ରଖିବ ଲବେ ॥
ଆମ୍ଭର ଦୋଷେ ଆମ୍ଭେ ଜାଣ । ହରାଇ ହେଲୁଁ ବୁଦ୍ଧିହୀନ ॥
ଆମ୍ଭେ ହେ କିଛି ନ ଜାଣିଲୁଁ । କା ସଙ୍ଗେ କପାଳ ଯୁଝିଲୁଁ ।
ଏପରି ଭାଳନ୍ତେ ନୃବର । ତାହା ଜାଣିଲେ ସତ୍ୟପୀର ॥
ଫକୀର ବେଶେ ନାରାୟଣ । ହଜସୁ ରାଜା ସନ୍ନିଧାନ ॥
ଅକସ୍ମାତରେ ଉପଗତ । ଧନୁ କି ପ୍ରକାଶେ ତଡ଼ିତ ॥
ଅର୍ଦ୍ଧ ମସ୍ତକେ କଳାପାଗ । ରକ୍ତ ବସନ ଗୌର ଅଙ୍ଗ ॥
ଏପରି ଭୟାନକ ବେଶେ । ମିଳିଲେ ଯାଇ ରାଜାପାଶେ ॥
ହସି କହନ୍ତି ନାରାୟଣ । ଅନାଇ ରାଜାର ବଦନ ॥
ଏ ଘୋର ବନେ ଦୁଇଜଣ । କାହିଁକି କରୁଛ ରୋଦନ ॥
କେ ଏତେ ଲୋକଙ୍କୁ ମାରିଲା । ମଡ଼ା ପଡ଼ିଛି ଭେଳା ଭେଳା ॥
ଶୋଣିତ ଚତୁର୍ଦ୍ଦିଗେ ବହେ । ଦେଖି ମୋ ଶରୀର ନ ସହେ ।୨୦
ନିଶ୍ଚୟ ବଡ଼ ଲୋକ ଆସି । ଏହାଙ୍କୁ ପକାଇଲେ ନାଶି ॥
ତୁମ୍ଭେ ତ ଜାଣି ନ ପାରିଲ । ଏବେ ତ ଅନାଥ ହୋଇଲ ॥
ଫକୀର ବଚନ ଶୁଣିଣ । ବିନୟେ କହଇ ରାଜନ ॥
ବ୍ୟାଘ୍ର ବିନାଶେ ଜଙ୍ଗଲକୁ । ଆସିଲା ଘେନିଣ ସୈନ୍ୟଙ୍କୁ ॥
ଆମ୍ଭେ ଯେ ଜାଣି ନ ପାରିଲୁଁ । କାହାର ସଙ୍ଗେ ଯୁଦ୍ଧ କଲୁଁ ॥
ଦୁଃଖ ଉପରେ ଦୁଃଖରାଶି । ଯେସନେ ତମ ବଧୂ ଗ୍ରାସି ॥
ଏ ଦୁଃଖ ମୋହର ଭାଗ୍ୟରେ । ଘଟିଲା ଆସି ଏତେବେଳେ ॥
କିଛି ନ ଜାଣି ରଙ୍ଗ ରୂପ । କାହାର ହୋଇଲା ପ୍ରକୋପ ॥
ସଙ୍ଗ ସଇନ ମୋ ମାରିଲା । ନ ଜାଣେ ସେହୁ କାହିଁଗଲା ॥

ଏବେ ଖଡ୍ଗେ ମୋର ଶିର । ନଷ୍ଟପ୍ର କାଟିବ ଆଗର ।୩୦।
ରାଜାର କାରୁଣ୍ୟ ବଚନେ । ସଦୟ ବନ୍ଧୁ ପ୍ରଭୁ ମନେ ॥
ବୋଲନ୍ତି ହେ ଭୂପତି ଶୁଣ । ଯେସଣେ ବଞ୍ଚିବେ ସେ ଧନ ॥
ମାନବ କନା ସତ୍ୟକର । କହିବ ତୁମ୍ଭର ଆଗର ॥
ତା ଶୁଣି କହଇ ରାଜନ । ନଷ୍ଟେ ମାନବୁ ସତ୍ୟଜାଣ ॥
ରାଜାର ବଚନେ ଫକୀର । ବୋଲନ୍ତି ଶୁଣ ମୋ ଉତ୍ତର ॥
ତୁମ୍ଭର ଯେତେକ ଶଇନ । ବଞ୍ଚିବେ ନଷ୍ଟେ ଏହିକ୍ଷଣ ॥
ଶିରିନୀ ଦେଇ ସତ୍ୟପୀର । ବନ୍ଦନେ ଯାଇ ପୂଜାକର ॥
ଫକୀରଙ୍କର ବାଣୀ ଶୁଣି । କହେ ନୃପତି ଦୁଃଖେ ବାଣୀ ॥
ମରି ଅଛନ୍ତି ଯେତେ ସୈନ୍ୟ । ସେଥିରେ ନାହିଁ ପ୍ରୟୋଜନ ॥
ଯେବେ ଅଲେଖ ନିରାକାର । ଦେଖିବ ନେତ୍ରରେ ମୋହର ।୪୦।
ତେବେ ପୂଜିବ ସତ୍ୟପୀର । ଶିରିନୀ ଦେଇଣ ଅପାର ॥
ରାଜାର ବାକ୍ୟରେ ଫକୀର । ବୋଲନ୍ତି ବଚନ ମଧୁର ॥
ଶୁଣ ରାଜନ ତୋଷ ଚିତ୍ତେ । ବୁଝାଇ କହୁଛି ମୁଁ ତୋତେ ॥
ଅଲେଖ ନିରାକାର ଯେହୁ । ହେ ରାଜା ସତ୍ୟପୀର ସେହୁ ॥
ତୁ ଯେବେ ନୃପ ଏକଚିତ୍ତେ । ଧ୍ୟାନ ଲଗାଉ ହୃଦଗତେ ॥
ଦେଖିବୁ ପ୍ରଭୁ ପରଂବ୍ରହ୍ମ । କହି ହୋଇଲେ ଅନ୍ତର୍ଦ୍ଧାନ ॥
ନୃପ ବାଞ୍ଛିତ ଦିବ୍ୟ ମୂର୍ତ୍ତି । ଶ୍ୟାମଳ ବର୍ଣ୍ଣ ଦିବ୍ୟକାନ୍ତି ॥
କମ୍ବୁରଥାଙ୍ଗ ଗଦାପଦ୍ମ । ଧରି ଅଛନ୍ତି ପରଂବ୍ରହ୍ମ ।୫୦।
ରାଜା ତା ଦେଖିଣ ଏସନ । ପଡ଼ିଲା ପ୍ରଭୁଙ୍କ ଚରଣ ॥
ମନରେ ଆନନ୍ଦ ହୋଇଲା । ଅଶେଷ ପାପ ତା ଖଣ୍ଡିଲା ॥
ପୂଜିବା ପାଇଁ ସତ୍ୟପୀର । ଇଚ୍ଛା ହେ କଲା ତା ମନର ॥
ସେଠାରେ ଦେବ ଭଗବାନ । ଫକୀର ରୂପ ସ୍ୱରୂପେଣ ॥
ରାଜା ଆଗରେ ଠିଆ ହେଲେ । ତକ୍ଷଣେ ରାଜାକୁ ପୁଚ୍ଛିଲେ ॥
ରାଜା କହଇ ତୋଷ ମନେ । ଶିରିନୀ ଦେବଇଁ ସୁମନେ ॥

ବଞ୍ଚାଇ ଦ୍ୟନ୍ତୁ ସର୍ବ ସୈନ୍ୟ । ପାଆନ୍ତୁ ସର୍ବେ ଜୀବଦାନ ॥
ତାହା ଶୁଣିଣ ସତ୍ୟପୀର । ଆନନ୍ଦ ହୋଇଣ ଅପାର ॥
ପଢ଼ିଣ ମୃତ୍ୟୁ ସଞ୍ଜିବନୀ । ସୈନ୍ୟଙ୍କୁ ବଞ୍ଚାଇଲେ ପୁଣି ॥
ଚେତ ଉଠିଲେ ସର୍ବସୈନ୍ୟ । ଦେଖି ସନ୍ତୋଷ ନରରାଣ ।୬୦।
ନିର୍ଦ୍ଧନ ଯେହ୍ନେ ପ୍ରାପ୍ତ ଧନ । ଅନ୍ଧକ ପାଇଲା ଲୋଚନ ॥
ଫକୀର କହନ୍ତି ସଧିରେ । ହେ ରାଜା ଶୁଣ ମନ ସ୍ଥିରେ ॥
ତୋହର ଝିଅ ମନ୍ଦିରରେ । ଅଛନ୍ତି ଏକା ସେ ଠାବରେ ॥
ଆମ୍ଭର ଅଟନ୍ତି ଜନନୀ । ତାଙ୍କର ପୁଅ ଆମ୍ଭେ ପୁଣି ॥
ମାତାଙ୍କ ଯୋଗରୁ ଏତେକ । ବନେ ପାଇଲ ନାନା ଦୁଃଖ ॥
ଏବେ ମୋହର ଜନନୀଙ୍କୁ । ହରଷେ ନଅନ୍ତୁ ଗୃହକୁ ॥
ତା ଶୁଣି ରାଜା ହର୍ଷଭରେ । ଝିଅକୁ ଆଣିଲା ସତ୍ୱରେ ॥
ହସ୍ତି ଉପରେ ବସାଇଲା । ଅତ୍ୟନ୍ତ ଆନନ୍ଦ ହୋଇଲା ॥
ଫକୀର ବୋଲନ୍ତି ବଚନ । ହେ ରାଜା ମନଦେଇ ଶୁଣ ॥
ପ୍ରତିମାସରେ ଆମ୍ଭ ପୂଜା । କରିବୁଁ ନିଷ୍ଟେ ଆହେ ରାଜା ।୭୦।
ମୁହିଁଟି ତୋର ଇଷ୍ଟଦେବ । ମନରେ ଅନ୍ୟ ତୁ ନ ଭାବ ॥
ଏପରି ଶୁଣି ନରରାଣ । ପଡ଼ିଲା ଫକୀର ଚରଣ ॥
ସକଳ ଦୁଃଖ ଜଣାଇଲା । ନାନାଦି ପାତକ ଖଣ୍ଡିଲା ॥
ସେ ଦିନୁ ମାନେ ନୃପବର । ଇଷ୍ଟ ଯେ କଲା ସତ୍ୟପୀର ॥
ସୈନ୍ୟ ସାମନ୍ତ ଘେନି ତୋଷେ । ଗମନ କଲେକ ସ୍ୱବାସେ ॥
ଆପଣା ଝିଅକୁ ସ୍ନେହରେ । ନେଇ ରଖିଲା ସ୍ୱଗୃହରେ ॥
ସେଠାରୁ ବନ୍ଧୁ ବାନ୍ଧବଙ୍କୁ । ନିମନ୍ତି ଆଣିଲା ଗୃହକୁ ॥
ହିନ୍ଦୁ ମୁସଲମାନ ସର୍ବେ । ବସିଲେ ଯାଇଁ ଏକଠାବେ ॥
ଉତ୍ତମ ବ୍ରାହ୍ମଣ ଡାକିଣ । ପୂଜାର ସାମଗ୍ରୀ ଖଞ୍ଜିଣ ॥
ପୂଜାସ୍ଥାନରେ ରମ୍ଭାବୃକ୍ଷ । ସ୍ଥାପିଲେ ନେଇ ଗୃହପାଖ ।୮୦।
ଉପରେ ଚନ୍ଦୁଆ ଟାଣିଲେ । ଚୂତ ପତ୍ରାଦି ଲମ୍ବାଇଲେ ॥

ସତ୍ୟପୀରଙ୍କ ପୂଜା ପାଇଁ । ଅସ୍ଥାନେ ଶୁକ୍ଳପାଟ ଥୋଇ ॥
ପଞ୍ଚାମୃତାଦି ପୂଜା ଦ୍ରବ୍ୟ । ପାରୁଶେ ରଖିଲେ ସରବ ॥
ପଞ୍ଚଦେବଙ୍କୁ ପୂଜା କଲେ । କୁଳ ଗୋସାଦି ଉଚାରିଲେ ॥
ସତ୍ୟପୀରଙ୍କ ପୂଜା ବ୍ରତ । ବ୍ରାହ୍ମଣେ କର ବଧିମତ ॥
ଆନନ୍ଦମନେ କଥା ଶୁଣି । ବିପ୍ରେ ଦକ୍ଷୀଣା ଦେଇ ପୁଣି ॥
ପ୍ରସାଦ ଖାଇଲେ ଆନନ୍ଦେ । ଏଥିଉତ୍ତାରେ ସଭା ମଧ୍ୟେ ॥
କହଇ ରାଜା ତୋଷ ହୋଇ । ସଭାଜନଙ୍କୁ ଯେ ଅନାଇ ॥
ଶ୍ରୀ ସତ୍ୟପୀରଙ୍କର ବ୍ରତ । କର ଆନନ୍ଦେ ବିଧିମତ ॥
ଦେଶେ ପ୍ରଚାର କର ପୂଜା । ବୋଇଲା ତହୁଁ ସେହି ରାଜା ।୯୦।
ଶୁଣି ସକଳେ ତୋଷ ହେଲେ । ପୀରଙ୍କ ବ୍ରତ ମୂଳ କଲେ ॥
ଅପୁତ୍ରୀ ଲଭିଲେ ସନ୍ତାନ । ଦରିଦ୍ରେ ହେଲେ ଧନବାନ ॥
ରୋଗ ଶୋକାଦି ଜ୍ୱର ଭୟ । ପୂଜା କରିଣ କଲେ ଭୟ ॥
ଯେ ପ୍ରଭୁ ବୈକୁଣ୍ଠ ଈଶ୍ୱର । ଫକୀର ରୂପେ ସତ୍ୟପୀର ॥
ପ୍ରକାଶ ହେଲେ ଏ ମହୀରେ । ପୂଜା ପାଇଲେ ସର୍ବଠାରେ ॥
ତାହାଙ୍କ ମହିମା ଅପାର । କହିବା ଶକତି କାହାର ॥
ନାନା ରୂପରେ ଅବତାର । ହୁଅନ୍ତି ଅବନୀ ଈଶ୍ୱର ॥
ନସ କାହୁଁ ଯବନ ନକର । ପୂଜନ୍ତି ଦେବ ସତ୍ୟପୀର ॥
ସେ ସତ୍ୟପୀର ଦେବ ଜନ୍ମ । ଅପୂର୍ବ ମହିମା କଥନ ॥
ଶ୍ରୀ କବିକଣ୍ଠ ବିରଚିତ । ଜନ୍ମ ପାଲାରୁ ଏ ଉଦ୍ଧୃତ ।୧୦୦।
ଶ୍ରୀ ସତ୍ୟ ନାରାୟଣ ଜନ୍ମ । ଦ୍ୱିତୀୟ ଭାଗ ସମାପନ ॥
ଆନନ୍ଦେ ଆହେ ସାଧୁଜନ । ଶୁଣି ନସ୍ତର ପୀର ଜନ୍ମ ॥
ଯେ ଏହା ପଢ଼ନ୍ତି ଶୁଣନ୍ତି । ସକଳ ଦୁଃଖୁଁ ସେ ତରନ୍ତି ॥
ଭକ୍ତି ଚିତ୍ତରେ ଯେହୁ ଜନ । ପୂଜଇ ସତ୍ୟନାରାୟଣ ॥
ଧନ ଜନରେ ପରିପୂର୍ଣ୍ଣ । କରନ୍ତି ସତ୍ୟ ନାରାୟଣ ॥

ବନ୍ଧ ବନ୍ଧନୁ ହୁଏ ମୁକ୍ତ । ବାଞ୍ଛା ମଣ୍ଡଳୁ ଲଭେ ପୁତ୍ର ॥
ଅନେକ ସୁଖ ସେ ଲଭଇ । ଅନ୍ତେ ସେ ସ୍ୱର୍ଗପୁର ଯାଇ ॥
ସୁଜନେ ବୋଲ ହରି ହରି । ପୀର ପୂଜଣ ଯାଅ କରି ॥
ଇତି ଶ୍ରୀ ସତ୍ୟପୀର ଜନ୍ମ । ପଞ୍ଚମ ଅଧ୍ୟା ସମାପନ ॥
ସନ ଉଣେଶ ବୟାଳିଶ । ଇଂରାଜୀ ନଭେମ୍ବର ମାସ ।୧୧୦।
ଏକାଳେ କଲି ମୁଁ ରଚନ । ଶ୍ରୀ ସତ୍ୟ ନାରାୟଣ ଜନ୍ମ ॥
ପ୍ରଭୁ କୃପାରେ ହେଲା ଶେଷ । ଶୁଣି ସୁଜନେ ହୁଅ ତୋଷ ॥
କହଇ ମନୋହର ସୂତ । ରକ୍ଷାକର ହେ ଦେବସତ୍ୟ ॥
ତବ ଶ୍ରୀ ଚରଣାରବିନ୍ଦ । ମେହେର ନାରାୟଣ ଭଜେ ॥
ଆତଙ୍କେ ପଶିଲି ଶରଣ । ଉଦ୍ଧର ଧରି ନାରାୟଣ ।୧୧୫।

ଇତି ଶ୍ରୀ ସ୍କନ୍ଦ ପୁରାଣେ ରେବାଖଣ୍ଡେ ଶ୍ରୀ ସତ୍ୟନାରାୟଣ ଜନ୍ମଖଣ୍ଡେ କୁନ୍ତୀ ଯବନ ରାଜା ଚରିତେ ଓ ଶ୍ରୀ ସତ୍ୟନାରାୟଣ ବ୍ରତ ପୂଜା ବର୍ଣ୍ଣନେ ଦ୍ୱିଶାସ୍ତ୍ର ଭାଗେ ନାମ ପଞ୍ଚମ ଅଧ୍ୟାୟଃ ।

## ସଂପୂର୍ଣ୍ଣ

ଶ୍ରୀ ଶୁଭମସ୍ତୁ

ମୁଦ୍ରାକର- ଶ୍ରୀଧନେଶ୍ୱର ସାହୁ
ସୂର୍ଯ୍ୟୋଦୟ ପ୍ରେସ୍, କଟକ-୮